# ଉତ୍ସର୍ଗ ।

ଯେଉଁ ମାନଙ୍କ ପାଇଁ ପୁସ୍ତକଟି ଲିଖିତ

କେବଳ ସେହି ମାନଙ୍କୁ ——————

ପ୍ରଣେତା ।

# ସୂଚୀପତ୍ର ।

**ବିଷୟ** **ପୃଷ୍ଠା**

| ବିଷୟ | | ପୃଷ୍ଠା |
|---|---|---|

# କୃଷି-ଚର୍ଯ୍ୟା ।

## ୧ମ ଅଧ୍ୟାୟ୍

ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳପରି ଆମ ଏହି ଢେଙ୍କାନାଳ କ୍ଷେତ୍ର୍‌ର ଅଧିକାଂଶ ଲୋକ ପେଟ ପୋଷିବା ପାଇଁ କୃଷି ଉପରେ ନିର୍ଭର କରନ୍ତି । କୃଷି ପ୍ରାୟ ସମସ୍ତଙ୍କର ପ୍ରଧାନ ଅବଲମ୍ବନ । ଏହି କୃଷିର ଉନ୍ନତି ଉପରେ ଆମ୍ଭମାନଙ୍କର ଉନ୍ନତି ନିର୍ଭର କରେ । କିନ୍ତୁ ଆମ୍ଭେମାନେ ଏ ବିଷୟରେ ଆଦୌ ଚିନ୍ତା କରୁନାହିଁ । ପୂର୍ବପୁରୁଷରୁ ଯେଉଁ ପ୍ରଥା ଚଳି ଆସୁଅଛି ଆମ୍ଭେମାନେ କେବଳ ସେଥିରେ ସନ୍ତୁଷ୍ଟ । ଆଜିକାଲି ସଭ୍ୟ ଜଗତର ଲୋକମାନେ ନାନା ପ୍ରକାର ବୈଜ୍ଞାନିକ କୌଶଳ ଆବିଷ୍କାର କରି କୃଷିର ଯେପରି ଉନ୍ନତି କଲେଣି ତାହା ଦେଖିଲେ ଆମ୍ଭେମାନେ ବିସ୍ମିତ ହେଉଁ କିନ୍ତୁ ତାହା ଅବଲମ୍ବନକରି ନିଜର ଉନ୍ନତି କରିବାରେ ମନ ଦେଉ ନାହୁଁ । ଆମର ପୂର୍ବପୁରୁଷ ଯେଉଁ ଜମିତକ ନେଇ ତହିଁରୁ ପ୍ରଚୁର ଶସ୍ୟ ଆମଦାନି କରି ପାରୁଥିଲେ, ସେହି ଜମି ଆମ ପାଖରେ ଥାଇ ମଧ ତହିଁରୁ ଆବଶ୍ୟକ ପରିମାଣ ଫସଲ ମିଳୁନାହିଁ । ଆମ୍ଭେମାନେ ଏହାର କାରଣ ମଧ ଠିକ୍ କରୁନାହୁଁ । କେବଳ ଭାଗ୍ୟକୁ ଆଦରି କଷ୍ଟ ସହୁଅଛୁଁ । ପାଖରେ ଏତେ ଜମି ଥାଇ ମଧ ପେଟକୁ ଦାନା ଅଣ୍ଟୁ ନାହିଁ, ବର୍ଷକର ଖଜଣା ଦିଆଯାଇ ପାରୁନାହିଁ । ଏହାଠାରୁ ବଳି ଦୁଃଖର କଥା ଆଉ କ'ଣ ହୋଇପାରେ । ଆଉମଧ କେବଳ ପୂର୍ବକାଳରୁ ପ୍ରଚଳିତ ଧାନଗଣ୍ଡାକ ଭିନ୍ନ ଆମ୍ଭେମାନେ ଆଉ କିଛି ଫସଲ କରୁନାହିଁ ।

ଏଣୁ ସଂସାରର ଅବଶ୍ୟକତା ପାଇଁ ଅମ୍ଭମାନଙ୍କୁ ଅନ୍ୟାନ୍ୟ ଜିନିଷ ବଜାରରୁ କିଣିବାକୁ ପଡ଼େ ଏବଂ ଏଥିପାଇଁ ବହୁ କଷ୍ଟୋପାର୍ଜିତ ଧାନଗଣ୍ଡାକ ବିକିବାକୁ ବାଧ ହେଉଁ । ଧାନର ଭାଉ କମି ଗଲେ ଆମର ସମସ୍ତ ଧାନ ବିକି ମଧ ଖଜଣା ଦେଇ ଅନ୍ୟାନ୍ୟ ଆବଶ୍ୟକ ପଦାର୍ଥମାନ କିଣି ପାରୁନାହିଁ । ଏହିହେତୁ ଧାନକରଜ, ଟଙ୍କାକରଜ ଇତ୍ୟାଦି କରି ପୂର୍ବପୁରୁଷଙ୍କ ଅର୍ଜିତ ଜମିଖଣ୍ଡିମାନ ବନ୍ଧକବିକ୍ରିରେ ହସ୍ତାନ୍ତର ହୁଏ । ଏହା ଘୋର ଦୁଃଖର ବିଷୟ । ଅବଶ୍ୟ କେହି କେହି ପୂର୍ବପ୍ରଚଳିତ ରୀତିରେ ଆଖୁ, ମୁଗ, ବିରି ଇତ୍ୟାଦି କରିଥାନ୍ତି କିନ୍ତୁ ନାନା କାରଣରୁ ଏଥିରେ ଉପଯୁକ୍ତ ଫଳବାନ୍ ନହୋଇ ଏବଂ ଅଧିକ ବ୍ୟୟକରି ଶେଷରେ ନିରାଶ ହୁଅନ୍ତି । ବଜାରର ଆବଶ୍ୟକତା ଘେନି, କେଉଁ ଫସଲ ଅଧିକ ଲାଭଜନକ ଅଥଚ ଅଳ୍ପ ବ୍ୟୟସାପେକ୍ଷ ଏହା ବୁଝି ବୁଦ୍ଧି ଓ କୌଶଳ ପ୍ରୟୋଗକରି ସେହି ସେହି ଫସଲ ନିଜ ନିଜ ଜମିରେ କରି ପାରିଲେ ଚଷାର ଦୁଃଖ ଘୁଞ୍ଚିଯିବା କଷ୍ଟକର ହେବ ନାହିଁ । ଏଣୁ ଏହି ସବୁ ବିଷୟରେ କେତେକ ଆଲୋଚନା ଏହି ପ୍ରବନ୍ଧର ଉଦ୍ଦେଶ୍ୟ ।

କୃଷିର ଉନ୍ନତି ପକ୍ଷରେ ଆମର ଯେତେପ୍ରକାର ଅଭାବ ଅସୁବିଧା ଅଛି ତାହା ଆଲୋଚନା କରି, ଦୂର କରିବାର ଉପାୟ ନିର୍ଦ୍ଧାରଣ କରିବା ସଙ୍ଗେ ସଙ୍ଗେ କୃଷକମାନଙ୍କର ଉପକାର ନିମିତ୍ତ କେତେକ ଉପାୟ ଓ କୌଶଳ ନିର୍ଦ୍ଦେଶ କରାଯିବ । ଅବଶ୍ୟ ଏ ସବୁ ଆଲୋଚନା କଲାବେଳେ ସ୍ଥାନୀୟ ଅବସ୍ଥା ଓ ଲୋକମାନଙ୍କର ଅବସ୍ଥା ପ୍ରତି ଦୃଷ୍ଟି ଦେବାକୁ ହେବ । ଯେଉଁ କଥା ସାଧାରଣଙ୍କ ପକ୍ଷରେ କରିବା ସହଜ ନୁହେଁ କିମ୍ବା ଯାହା ସମଧିକ ବ୍ୟୟସାପେକ୍ଷ ସେପରି କଥା କହିବାର ପକ୍ଷପାତୀ ଆମ୍ଭେମାନେ ନୋହୁଁ ।

## ଆମର ପ୍ରଧାନ କେତକ ଅନ୍ତରାୟ:—

( କ ) ଅତି ବୃଷ୍ଟି ।
( ଖ ) ଅନାବୃଷ୍ଟି ।
( ଗ ) ଉପଯୁକ୍ତ ସାରର ଅଭାବ ଓ ତାର ପ୍ରୟୋଗରେ ଦୋଷ ।
( ଘ ) ଉପଯୁକ୍ତ ଚାଷ ( ଭୂମିକର୍ଷଣ ) ର ଅଭାବ ।
( ଙ ) ଉପଯୁକ୍ତ ପରିମାଣ ଏବଂ ଜମି ଅନୁସାରେ ଉପଯୁକ୍ତ ବିହନର ଅଭାବ ।
( ଚ ) କୃଷିର ଉପକରଣ ।
( ଛ ) ବଳଦ, ପଣ୍ଡା ଇତ୍ୟାଦି ।
( ଜ ) ନଈକୂଳ ଜମିରେ ନଈବଢ଼ି ହେତୁ କ୍ଷତି ।
( ଝ ) ଶସ୍ୟ ନଷ୍ଟକାରୀ କୀଟପତଙ୍ଗ ଓ ପଶୁପକ୍ଷୀମାନଙ୍କଦ୍ୱାରା ଶସ୍ୟର କ୍ଷତି ।
( ଞ ) ଅବହେଳା—ଚେଷ୍ଟାର ଅଭାବ ଓ କୁସଂସ୍କାର ।
( ଟ ) କୃଷି ସମ୍ବନ୍ଧୀୟ ବୈଜ୍ଞାନିକ ପ୍ରଣାଳୀ ବା ଅନ୍ୟାନ୍ୟ ବିଷୟରେ ଆବଶ୍ୟକ ଜ୍ଞାନର ଅଭାବ ।
( ଠ ) ଅର୍ଥାଭାବ--ମୂଳଧନର ଅଭାବ ।

**( କ ) ଅତିବୃଷ୍ଟି** :—ଆମ ଏ ଅଞ୍ଚଳରେ ଅତିବୃଷ୍ଟି ପ୍ରାପ୍ତ ହୋଇ ନଥାଏ । ବେଳେ ବେଳେ ଯାହା ହୁଏ ତାହା କମ୍ । ଏଣୁ ଏ ସମ୍ପର୍କରେ ବିଶେଷ ଆଲୋଚନା ନିଷ୍ପ୍ରୟୋଜନ । ତଥାପି କୁହାଯାଇ ପାରେ ଯେ ଯେଉଁ ସମୟରେ ଖୁବ୍ ବେଶୀ ବର୍ଷା ହୁଏ ସେତେବେଳେ ଜମିମାନଙ୍କରୁ ଯେପରି ପାଣୀ ନିଗିଡ଼ିଯାଇ ପାରେ ତାର ସୁବିଧା କରାଯିବା ଉଚିତ । ଅତିମଧ୍ୟ ବୃଷ୍ଟିର

ସମୟକୁ ଲକ୍ଷ୍ୟରଖି ଚଞ୍ଚଳ ଚଞ୍ଚଳ କାମ ଶେଷ କଲେ ବିଶେଷ ଅନିଷ୍ଟର ଆଶଙ୍କା ନଥାଏ ।

**( ଗ ) ଅନାବୃଷ୍ଟି :--** ଏହା ଆମ୍ଭମାନଙ୍କର ଗୋଟିଏ ବଡ଼ ସମସ୍ୟା । ଧାନ ବା ରବିଫସଲ ବୁଣି ଦେଇ ଆମେ କେବଳ ଆକାଶକୁ ଅନାଇ ବସିଥାଉଁ । ଦୈବାତ୍ ବର୍ଷା ବନ୍ଦ ହୋଇଗଲେ ସମସ୍ତ ଫସଲ ମରି ନଷ୍ଟ ହୋଇଯାଏ ଏବଂ ରାଜ୍ୟରେ ଦୁର୍ଭିକ୍ଷ ଆରମ୍ଭ ହୁଏ । ଏହାର ଯଥେଷ୍ଟ ପ୍ରତିକାର କରି ଯାଇପାରେ । ମୋଗଲବନ୍ଦି ମାହାଲମାନଙ୍କରେ ବଡ଼ ବଡ଼ ନଦୀ ଥିବାରୁ ତହିଁରୁ କେନାଲ ଖୋଲାହୋଇ ବର୍ଷାଅଭାବରେ ତହିଁରୁ ବିଲମାନଙ୍କୁ ପାଣି ଯୋଗାଇ ଦିଆଯାଇଥାଏ । ଏହାଦ୍ୱାରା ଧାନ ଫସଲ ଓ ରବିଫସଲ ଉଭୟ ଉପକାର ପାଏ । ଏହା ଅନେକ ସ୍ଥାନରେ ବଡ଼ ବଡ଼ ବନ୍ଧ ଥିବାରୁ ଅସମୟରେ ପାଣି ଯୋଗାଇବାର ସୁବିଧା ହୁଏ ।

ଓଡ଼ିଶାର ବଡ଼ ନଦୀ ବ୍ରାହ୍ମଣୀ ଢେଙ୍କାନାଳ ରାଜ୍ୟର ଠିକ୍ ମଝିରେ ପଶ୍ଚିମରୁ ପୂର୍ବକୁ ଯାଇଅଛି । ଏହା ଭିନ୍ନ ଅନେକ ଛୋଟ ନଈ ନାଳ ଝରଣା ଭିନ୍ନ ଭିନ୍ନ ସ୍ଥାନରେ ଅଛି । ଏ ସବୁର ଜଳ କୃଷକମାନେ ବ୍ୟବହାର କରିଥାନ୍ତି । କିନ୍ତୁ ସେମାନଙ୍କର ସଂଖ୍ୟା ଖୁବ୍ କମ୍ । ଯେଉଁମାନେ କୂଳରେ ଥାନ୍ତି ସେହିମାନେ କେବଳ ଏହାର ଜଳ ବ୍ୟବହାର କରି ପାରନ୍ତି । ଆଉମଧ ବର୍ଷାକାଳଭିନ୍ନ ଅନ୍ୟ ସମୟରେ ଏଥିରେ ପ୍ରାୟ ଜଳ ନଥାଏ । ବର୍ଷା ସମୟରେ ଏଥିରୁ କେନାଲ ଖୋଳିନେଇ ଅନ୍ୟ ସ୍ଥାନରେ ପାଣି ଜମାକରି ରଖିଲେ ବିଶେଷ ଉପକାର ହୋଇପାରେ ।

ଅନେକ ସ୍ଥାନରେ ବଡ଼ ଛୋଟ ଅନେକ ପର୍ବତ ଅଛି । ସେଥିରୁ ବର୍ଷାପାଣି ଗଡ଼ି ଇତସ୍ତତଃ ଯାଇ ବୃଥା ନଷ୍ଟ ହୁଏ । ତଳେ ଅଳ୍ପ ବ୍ୟୟରେ ଗୋଟିଏ ଗୋଟିଏ ବନ୍ଧ ( ହୁଡ଼ା ) କରଦେଲେ ସେଠାରେ ବହୁତ ପାଣି ଜମାହୋଇ ରହି ପାରେ ଏବଂ ଆବଶ୍ୟକ ହେଲେ ତଳର ସବୁ ଜମିରେ ପାଣି ମଡ଼ାଇବାର ସୁବିଧା ହୁଏ । ଗ୍ରାମବାସିମାନେ ନିଜ ନିଜ ଗ୍ରାମମାନଙ୍କରେ ସମ୍ମିଳିତ ଚେଷ୍ଟାରେ ବର୍ତ୍ତି ବଡ଼ ବନ୍ଧମାନ ଖୋଳାଇ ଅନାବୃଷ୍ଟି ବିପଦରୁ ରକ୍ଷା ପାଇ ପାରନ୍ତି । ସର୍କାର ମଧ୍ୟ ଏ ବିଷୟରେ ସାହାଯ୍ୟ ଦେବାକୁ ସର୍ବଦା ପ୍ରସ୍ତୁତ । ଅବଶ୍ୟ ଏଥିପାଇଁ ମୂଳଧନ ଆବଶ୍ୟକ ମାତ୍ର ସମୂହ ଚେଷ୍ଟା କଲେ କୌଣସି ଅଭାବ ଗ୍ରାମବାସିମାନଙ୍କର ପଥରେ ବାଧା ଦେଇ ନପାରେ । ଏପରି ଚେଷ୍ଟା ନକରି ସବୁବେଳେ ଆକାଶପାଣିକୁ ଅନାଇ ରହିବାରୁ ଆମ ଓଡ଼ିଶାରେ ଅନାବୃଷ୍ଟି ଯେପରି ପ୍ରାୟ ପ୍ରତିବର୍ଷ ଦେଖାଯାଉଅଛି ସେଥିରେ ଲୋକେ ଦିନକୁ ଦିନ ଅଧିକ ଦୁଃଖୀ ଦରିଦ୍ର ହେବା ସ୍ୱାଭାବିକ ।

**( ଗ ) ଉପଯୁକ୍ତ ସାର ଓ ତା'ର ପ୍ରୟୋଗ**:--ଗୋଟିଏ ଜମିରେ ପ୍ରତି ବର୍ଷ ଏକ ପ୍ରକାର ଫସଲ କରି ଖାଇବା ଆମ୍ଭମାନଙ୍କର ଅଭ୍ୟାସ । ଶସ୍ୟ ମାଟିର ସାର ଖାଇ ପୁଷ୍ଟ ହୁଏ ଓ ଭଲ ଫଳ ଦିଏ । ମାତ୍ର ପ୍ରତି ବର୍ଷ ଏହିପରି ଖାଇ ଖାଇ ମାଟିର ଉର୍ବରତା କ୍ରମେ ନଷ୍ଟ ହୋଇ ଯାଏ । ଏଣୁ ବାହାର ସାର ଦ୍ୱାରା ମାଟିକୁ ଉର୍ବର କରିବାକୁ ହେବ । ଏହା ଅଭାବରୁ ଆମ ଦେଶରେ ଜମିସବୁ କ୍ରମେକ୍ରମେ ଅନୁର୍ବର ହୋଇ ଅଳ୍ପ ଫସଲ ଦେଉଅଛି । ଆଉମଧ୍ୟ ଗୋଟିଏ ଜମିରେ ଏକ ପ୍ରକାର

ଫସଲ ବାରମ୍ବାର କଲେ ତା'ର ଉର୍ବରତା ନଷ୍ଟ ହେବା ସମ୍ଭବ । ଏଣୁ କୃଷକମାନଙ୍କୁ ସାର ବିଷୟରେ କେତେକ କଥା କହିବା ଆବଶ୍ୟକ । ଜମିର ସୁବିଧା ଅନୁସାରେ ସାରର ପ୍ରକାରଭେଦ ଓ ପରିମାଣ ନିରୂପଣ କରିବାକୁ ହେବ ।

**( ୧ ) ଗୋବରଖତ:**— ଗୋରୁମାନଙ୍କର ମଳ ଓ ମୂତ୍ର ଆମର ପ୍ରଧାନ ଖତ । ସାଧାରଣତଃ ଏହାହିଁ ଆମମାନଙ୍କ ବିଲରେ ଦିଆଯାଇଥାଏ । ମଇଁଷି, ଛେଳି, ମେଣ୍ଢା, ଘୋଡ଼ାଇତ୍ୟାଦି ପଶୁମାନଙ୍କର ଗୋବର ମଧ୍ୟ ଭଲ ଖତ ହୁଏ ମାତ୍ର ଏ ସବୁ ଗୋରୁମାନଙ୍କର ଗୋବର ଓ ମୂତ୍ରଠାରୁ ଅଧିକ ଉପକାରୀ ନୁହେଁ । ଗୋଟିଏ ଚଉଖୁଣ୍ଟିଆ ଗାତ ଖୋଳି ତହିଁରେ ଗୋବର ଓ ମୂତ ଜମାକରି ରଖିଲେ ଏକବର୍ଷମଧ୍ୟରେ ତାହା ପଚି ବିଲରେ ଦେବାକୁ ଉପଯୁକ୍ତ ହୁଏ । ମୂତକୁ ସ୍ୱତନ୍ତ୍ରଭାବରେ ମଧ୍ୟ ରଖି ଯାଇପାରେ । ଏହାଦ୍ୱାରା ଫସଲର ବିଶେଷ ଉପକାର ହୁଏ । ଆମମାନଙ୍କ ମଧ୍ୟରୁ ଅନେକେ କାଠ ସଂଗ୍ରହ ନକରି ଗୋବରକୁ ଘଷି କରି ଜାଳନ୍ତି । ଏହା ବଡ଼ ଅନ୍ୟାୟ ଏବଂ ଏ ବିଷୟରେ ବିଶେଷ ସାବଧାନ ହେବା ବିଧେୟ । ଘୋଡ଼ା ଓ ଛେଳି ନେଣ୍ଡି ଲୋକେ ସେତେ ବେଶୀ ଘାନ୍ତି ନାହିଁ । ଏହା ମଧ୍ୟ ପଚିବାକୁ ବହୁତ ସମୟ ଲାଗେ । ଏଣୁ ଗୋରୁର ଗୋବରଖତ ସମସ୍ତେ ବ୍ୟବହାର କରନ୍ତି । ଏହାର ପରିମାଣ ଓ ଲଗାଇବାର ପ୍ରଣାଳୀ ଫସଲ ବିଷୟରେ କୁହାଯିବ । ତେବେ ଏଠାରେ ଏତିକି କୁହାଯାଇପାରେ ଯେ ପ୍ରତି ଏକ ମାଣ ଜମିରେ ୫ ଗାଡ଼ିରୁ କମ୍ ଖତ ଦେବା ଠିକ୍ ନୁହେଁ । ଏହାଠାରୁ ଅଧିକ ଦେବା ଶ୍ରେୟ । ଗୋବରଖତ

ମା ୬ ସ ଠାରୁ ମା ୯ ସ ମଧ୍ୟରେ ପଚ ବିଲରେ ଦେବାର ଉପଯୁକ୍ତ ହୁଏ । ଏହା ମଧ୍ୟ ଫସଲର ସ୍ୱାଦ ବଢାଏ । ଭାଦ୍ର ମାସରେ କଞ୍ଚା ଗୋବର ବିଲରେ ଦେଲେ ଫଳ ଭଲ ହୁଏ । ମଇଁଷି ଗୋବରଦ୍ୱାରା ଫଳର ଆକାର ବଢେ । ଗୋରୁ ମୂତ୍ର ମା ୩ ସ ମଧ୍ୟରେ ପଚ ବିଲରେ ଦେବାର ଉପଯୁକ୍ତ ହୋଇଥାଏ ।

**( ୨ ) ଉଦ୍ଭିଦ ଖତ:—ଅଶଥ,** ପରବାଗ୍ରେପା, ଅନାମନାଗଛ, କଦଳୀ ପତ୍ର ବାହୁଙ୍ଗା ଇତ୍ୟାଦି, ଆଖୁପତ୍ର ଇତ୍ୟାଦି ଇତସ୍ତତଃ ଫୋପାଡ଼ି ନଦେଇ ଗୋଟିଏ ଖାଲରେ ଜମାକରି ରଖିଲେ କ୍ରମେ କ୍ରମେ ପଚି କେତେକ ଦିନପରେ ଠିକ୍ ଗୋବରର ଖତପରି ଦେଖାଯାଏ ଏବଂ ଏହି ଅବସ୍ଥାରେ ବିଲରେ ଦେଲେ ଉପକାର କରେ । ଏହା ସଙ୍ଗରେ କେତେକ ପରିମାଣ ଚୂନ, ଗୁହାଳଧୁଆ ପାଣି, କମ୍ବା ଗୋରୁମୂତ୍ର ମିଶାଇ ଦେଲେ ପଚିବାର ସୁବିଧା ହୁଏ ।

**( ୩ ) ପତ୍ରଖତ:**—ଜଙ୍ଗଲରେ, ନାଲକୂଳର ଗଛମୂଳମାନଙ୍କରେ ଅନେକ ଦିନରୁ ଶୁଖିଲା ପତ୍ର ଜମାହୋଇ ପଚିଥାଏ । ଉପରୁ କେତେକ ଅଙ୍ଗୁଳି ଏହି ପତ୍ର କାଟି ବାହାର କରି ଦେଲେ ତଳେ ସୁନ୍ଦର ସାର ବାହାରିଥାଏ । ଏହାକୁ ନେଇ ଜମିରେ ପକାଇଲେ ବିଶେଷ ଉପକାର ହୁଏ । ବିଶେଷତଃ ବଗିଚା ଜମିରେ ଏହାର ଉପକାରିତା ବେଶୀ ।

**( ୪ ) ସବୁଜ ସାର:—ଢାଲ** ବିଅଣମାନ କୃଷକର ବହୁଳରେ ଧଞ୍ଚା, ଛଣପଟ, ନଳିତା ଓ ଅନ୍ୟାନ୍ୟ କେତେକ ଜୁଇଁ-

ଜ୍ଞାତାସ୍ତୁ ଗଛର ବନ୍ଧନ ବୁଣିଲେ ସେ ଗୁଡ଼ାକ ବଦଳହୋଇ ଗଛହୋଇ ଯିବାର କେତେକ ଦିନପରେ ଅର୍ଥାତ୍ ତହିଁରେ ଛୁଇଁସବୁ ପାକଲହେବା ପୂର୍ବରୁ ବିଲକୁ ଚାଷ କରିଦେଲେ ଗଛଗୁଡ଼ିକ ଉପୁଡ଼ି ମାଟି ସହିତ ମିଶିଯିବ ଏବଂ କ୍ରମେ କ୍ରମେ ପଚି ମାଟିର ସାରସ୍ୱରୂପ ବିଶେଷ ଉପକାର କରିବ। କେତେକ ଗଛ ରଖିନେଲେ ତହିଁରେ ଅନ୍ୟଥର ପାଇଁ ମଞ୍ଜି ରହିପାରେ।

( ୫ ) **ହାଡଗୁଣ୍ଡ**:—ହାଡ଼ଗୁଣ୍ଡ ବିଲର ଗୋଟିଏ ଖୁବ୍ ଉପଯୁକ୍ତ ସାର। ସାଧାରଣତଃ ଗୋବରଖତ ଅପେକ୍ଷା ଏଥିରେ ଅଧିକଫଳ ହୋଇଥାଏ। ଏହା କଲିକତାରେ ମହଣ ୫ ୩୯ ଦରେ ମିଳିପାରେ। ଏହି ଗୁଣ୍ଡ ଦେଲେ ଯେଉଁ ଜମିରୁ ପୌ ୬ ଟି ଧାନ ହୁଏ, ତହିଁରୁ ପୌ ୯ ଟି ମିଳିପାରେ। ଆମ ଦେଶରେ ବହୁତ ହାଡ଼ ମିଳେ। ଗୋଟିଏ ବଡ଼ ହାଣ୍ଡିରେ ହାଡ଼ ଭର୍ତ୍ତି କରି ରଖି ତା ଉପରେ ମାଟି ଦେଇ ଗୋମୂତ୍ର ଢାଳିଲେ ( ମଧ୍ୟେ ମଧ୍ୟେ ଢାଳିବାକୁ ହେବ ) ୨ ମାସ ମଧ୍ୟରେ ହାଡ଼ସବୁ ଗୁଣ୍ଡ ହୋଇ ଆସିବ। ଏହାକୁ ଗୁଣ୍ଡକରି ବିଲରେ ଦେଲେ ବିଶେଷ ଉପକାର ହୁଏ।

( ୬ ) **ପିଡ଼ିଆ**:—ରାଶି, ସୋରିଷ ଇତ୍ୟାଦିର ପିଡ଼ିଆକୁ ଗୁଣ୍ଡକରି ତହିଁରେ ମାଟି ଓ ପାଣି ମିଶାଇ ୭।୮ ଦିନ ରଖି ନେଲେ ବିଲରେ ଦେବାର ଉପଯୁକ୍ତ ହୁଏ। ଏହା ବଗିଚା ପାଇଁ ବେଶୀ ଲୋଡ଼ା ହୋଇଥାଏ।

( ୭ ) **ଯବକ୍ଷାର** ( ସୋରା ), ଚୂନ, ପୋଖରୀର ପଙ୍କ, ନଈର ପଟୁ ଇତ୍ୟାଦି ମଧ୍ୟ ଉତ୍ତମ ସାର। ଗୁହାଳର ଅଳିଆ, ନର୍ଦ୍ଦମାର

ମଇଲା ଇତ୍ୟାଦି ବିଲରେ ପକାଇଲେ ଖତ ହୁଏ । ପାଉଁଶ ମଧ୍ୟ କେତେକ ଫସଲ ପାଇଁ ଭଲ ସାର । ଦୋକଡା ପକ୍ଷରେ ଉପକାରୀ ।

**( ଙ ) ଆମୋଫସ୍ :**—ଏହା ଅସ୍ମମାନଙ୍କର ବିଲରେ ବ୍ୟବହୃତ ହେଉ ନାହିଁ । ଏହା ବୈଜ୍ଞାନିକ ପ୍ରଣାଳୀରେ ପ୍ରସ୍ତୁତ ଖତ । କଟକ ଓ କଲିକତାରେ ମିଳେ । ବିଲରେ ଦେଲେ ସାଧାରଣ ଖତ ଅପେକ୍ଷା ଅଧିକ ଭଲ ଫଳ ଦେଇଥାଏ । ଢେଙ୍କାନାଳ ପ୍ରାଇମେର ସ୍କୁଲମାନଙ୍କରେ ଏହି ଖତ ପରୀକ୍ଷା କରାଯାଇ ତା'ର ଉପକାରିତା ଦେଖାଯାଇଅଛି । କୋବି, ଆଳୁଇତ୍ୟାଦି ଓ ଆଖୁଇତ୍ୟାଦିରେ ବ୍ୟବହାର କଲେ ବିଶେଷ ଲାଭ ହୋଇଥାଏ । ଏଥିରୁ ଯେଉଁ ଲାଭ ହୁଏ ତଦ୍ୱାରା ସାର କିଣିବା ଖର୍ଚ୍ଚ ବାଦ ଯାଇ ଯଥେଷ୍ଟ ଲାଭ ହୋଇପାରେ ।

**( ଘ ) ଉପଯୁକ୍ତ ଭୂମିକର୍ଷଣ** ( ଚଷ ):— ଉତ୍ତମରୂପେ ଚଷ ନକରି ଆଉ ଯେତେ ଯାହା କରାଗଲେ ମଧ୍ୟ ଫସଲ ଭଲହେବା ସମ୍ଭବ ନୁହେଁ । ବିଭିନ୍ନ ଫସଲ ପାଇଁ ବିଭିନ୍ନ ସମୟରେ ବିଭିନ୍ନ ରୀତିର ଚଷ ଅବଶ୍ୟକ । ସାଧାରଣ ଧାନପାଇଁ ତିନିଓଡ଼ ଚଷ କଲେ ଧାନଗଛ ବଢିବାର ସୁବିଧା ହୁଏ । ଦେଶୀ ଲଙ୍ଗଳରେ ବିଲକୁ ବାରମ୍ବାର ଚଷ କରିବା ଉଚିତ । ଶାଳ, ଅସ୍ମ, ଗୋହିରା ପ୍ରଭୃତି କେତେକ କାଠ ଲଙ୍ଗଳ ପାଇଁ ଭଲ । ଏ ଅଞ୍ଚଳରେ ଜମି ଚଷ ପାଇଁ ଏହି କାଠର ଲଙ୍ଗଳ ଯେତେଦୂର ଉପକାରୀ, ଅନ୍ୟ କୌଣସି ଲଙ୍ଗଳ ସେପରି ନୁହେଁ ।

ଉତ୍ତମ ଚଷଦ୍ୱାରା ମାଟି ଗୁଣ୍ଡ ହୁଏ, ବିଲରୁ ଘାସ ମରିଯାଏ,

ମାଟି ଭିତରେ ଆଲୋକ ଓ ବାୟୁ ପ୍ରବେଶକରି ମାଟିର କୀଟସବୁ ନାଶ କରେ ଓ ମାଟିକୁ ହାଲୁକା କରେ । ମାଟି ଜଳଗ୍ରହଣ କରିବାକୁ ଯେପରି ସୁବିଧା ହୁଏ, ଗଛ ମାଟିରୁ ଅବାଧରେ ରସ ଶୋଷଣ କରିବାର ମଧ ସେହିପରି ସହଜ ହୁଏ ।

ସାଧାରଣତଃ ଧାନ ପାଇଁ ୩ ଇଞ୍ଚ ଗଭୀର ଚଷ ଆବଶ୍ୟକ । ଅନ୍ୟାନ୍ୟ ଫସଲ ପାଇଁ ୬ ଇଞ୍ଚରୁ କମ୍ ଗଭୀର ଚଷକଲେ ଚଳିବ ନାହିଁ । ଆମ ମାଟିରେ ୩ ଇଞ୍ଚରୁ ଅଧିକ ଗଭୀର ଚଷ ମଧ ଫସଲପକ୍ଷରେ ସେତେ ଉପକାର କରେ ନାହିଁ ।

ଧାନ ଅପେକ୍ଷା ରବି ଫସଲ ପାଇଁ କମ୍ ଚଷ ଆବଶ୍ୟକ । ପ୍ରାୟ ଦୁଇ ଓଡ଼ ଚଷକରି ଏବଂ ଘାସ ମାରିବାକୁ ଅପେକ୍ଷା ନକରି ଲୋକେ ରବି ବୁଣି ଥାନ୍ତି କିନ୍ତୁ ଆଖୁ, କପା, ଦୋକଡା ଇତ୍ୟାଦି ଫସଲ ପାଇଁ ଧାନଠାରୁ ମଧ ବେଶୀଥର ଚଷ ଆବଶ୍ୟକ ।

ମାଘମାସ ଶେଷରେ ବର୍ଷାହେଲେ ସଙ୍ଗେସଙ୍ଗେ ବିଲକୁ ଏକ ଓଡ ଚଷ କରିବା ଆବଶ୍ୟକ । ଆଉମଧ ଧାନ ବୁଣିବା ପୂର୍ବରୁ ଆଉ ଦୁଇ ଓଡ଼ ଚଷ ହୋଇଥିଲେ ଭଲ ହୁଏ । ଜ୍ୟେଷ୍ଠ ମାସରେ ଧାନ ବୁଣା ଯାଏ । ଏହା ପୂର୍ବରୁ ଭଲ ରକମ ଚଷ ହୋଇଥିଲେ ମାଟି ଯଥେଷ୍ଟ ଖରା ଖାଇଥାଏ ଏବଂ ତହିଁରୁ ଘାସ ଓ କୀଟ ମରି ଯାଇଥାନ୍ତି । ଏହି ସମୟରେ ଯେଉଁମାନେ ଚଷ ନକରନ୍ତି ସେମାନେ କ୍ଷତିରେ ପଡ଼ନ୍ତି ।

ଅନେକେ ଚଷ ପୂର୍ବରୁ ବିଲରେ ଖତ ଲଗାନ୍ତି । ଏହା ଠିକ୍ ନୁହେଁ । ୩ ଓଡ଼ ଚଷ ପରେ ଖତ ଲଗାଇବାକୁ ହୁଏ । ବୁଣିବାର ଠିକ୍ ପରେ ଖତକୁ କିଆରି ମଧ୍ୟରେ ସମାନ

ଭାବରେ ବାଣ୍ଟିଦେବା ଆବଶ୍ୟକ । ଏହା କଲେ ଧାନ ବୁଣିବା ସଙ୍ଗେସଙ୍ଗେ ଯେଉଁ ଚାଷ ହୁଏ ସେହି ଚାଷରେ ଖତ ବାଲିରେ ମିଶିଯାଏ ଏବଂ ଫସଲର ଉପକାର କରେ ।

ବେଉଷଣ ଦ୍ୱାରା ମଧ୍ୟ ଜମିର ଚାଷ ହୁଏ । ଦୁଇ ଓଡ଼ା ବେଉଷଣ ଫସଲର ବିଶେଷ ହିତ ସାଧନ କରେ । ଆଗରୁ ବାଲିରେ ଯାହା ଅବା ଘାସ ରହି ଯାଇଥାଏ, ଏହିପରି ବେଉଷଣରେ ତାହା ଏକାବେଳେକେ ପଚିଯାଏ । ଅବଶ୍ୟ ରବି ଫସଲରେ ଏପରି ବେଉଷଣ ଆବଶ୍ୟକ ହୁଏ ନାହିଁ କିନ୍ତୁ ଆଖୁ, ଦୋକଡା, ବାଇଗଣ, କପା ଇତ୍ୟାଦି ଫସଲରେ ବାରମ୍ବାର ଯେଉଁ କୋଡ଼ ଦିଆ ଯାଇଥାଏ ତାହା ତା'ର ବେଉଷଣ । ରବି ଓ ଆଖୁଆଦି ଫସଲ ପାଇଁ ଚାଷର ସମୟ ଓ ପରିମାଣ ସ୍ୱତନ୍ତ୍ର । ପ୍ରତ୍ୟେକ ଫସଲସମ୍ପର୍କରେ ଏହା ଲୁହାଯିବ ।

**ବିହନ**—ବିହନ ବିଷୟରେ ସମସ୍ତଙ୍କର ବିଶେଷ ସାବଧାନତା ଆବଶ୍ୟକ । ବିହନଗଣ୍ଡାକ ଉପରେ ବର୍ଷକର ଫସଲ ନିର୍ଭରକରେ, ଏଣୁ ଏହାକୁ ସାଇତି ରଖିବା ଚଷାର ପ୍ରଧାନ କର୍ତ୍ତବ୍ୟ ହେବା ଉଚିତ । ଏଥିରେ ହେଲାହେଲେ ଅନ୍ୟ ବର୍ଷକୁ ଚଷାକୁ ବାରଦୁଆର ଶୁଣ୍ଢିପିଣ୍ଡା ହେବାକୁ ହେବ । ଅବଶ୍ୟ ଚଷାମାନେ ଏ ବିଷୟରେ ଢ଼େର ଅଧିକ ସାବଧାନ ଥା'ନ୍ତି—କିନ୍ତୁ ମୂର୍ଖତା ଦୋଷରୁ ଓ ଅବହେଳାରୁ ବେଳେବେଳେ ବିପ୍ୟାନଙ୍କ ଘଡିରେ ପଡିବାକୁ ହୁଏ ।

ଉପଯୁକ୍ତ ବିହନ ସମ୍ପର୍କରେ ନିମ୍ନଲିଖିତ କଥାପ୍ରତି ଦୃଷ୍ଟିଦେବାକୁ ହେବ ।

(୧) ଫସଲ ପୋଖତ ନହୋଇଥିଲେ ସେଥିରୁ ବିହନସଂଗ୍ରହ

କରିବା ଠିକ୍ ନୁହେଁ । ଏହି ବିହନରୁ ଭଲ ଗଛ ବା ଫଳ ହୁଏ ନାହିଁ ।

(୨) ଗୋଟିଏ ବିହନରେ ଅନ୍ୟ କୌଣସି ବିହନ ମିଶିବା ଅନ୍ୟାୟ। ଏହାଦ୍ୱାରା ଉଭୟର ଷତି ହୁଏ । ଯେଉଁ ଗଛ ଶୀଘ୍ର ବଢ଼େ ତାହା ଅନ୍ୟକୁ ଖରାପ କରିଦିଏ, ନିଜେ ମଧ୍ୟ ଭଲ ହୁଏ ନାହିଁ । ଏଣୁ ବିହନ ଏକ ଜାତୀୟ ହେବା ଉଚିତ ।

(୩) ବିହନ ବାନ୍ଧିରଖିବା ପୂର୍ବରୁ ଉତ୍ତମରୂପେ ଖରା ଓ ପବନ ଦେବା ଉଚିତ ।

(୪) ବିହନକୁ ବାନ୍ଧି ଉଚ୍ଚ ଓ ଶୁଷ୍କ ସ୍ଥାନରେ ରଖିବାକୁ ହେବ ଯେପରି ଥଣ୍ଡାପବନ ଓ ବର୍ଷାପାଣି ତହିଁରେ ନଲାଗେ । ବୁଣା ହେବାର ଠିକ୍ ପୂର୍ବରୁ ବିହନ ଫିଟାଇବାକୁ ହେବ । ଆମଦେଶରେ ପାଳରେ ଓଳିଆ କରି ବିହନ ବାନ୍ଧନ୍ତି; ଏହା ଉତ୍ତାପ ଓ ବାୟୁ ହିସାବରେ ଖୁବ୍ ଭଲ ଉପାୟ ।

(୫) ଅନେକ ସମୟରେ ପୋକ ଲାଗି ବିହନ ନଷ୍ଟକରି ଦିଅନ୍ତି । ସେ ବିଷୟରେ ଖୁବ୍ ବେଶୀ ସାବଧାନ ହେବା ବିଧେୟ । ମୁଗ ହରଡ଼ ଇତ୍ୟାଦି କେତେକ ଜିନିଷରେ ଖୁବ୍ ଶୀଘ୍ର ପୋକ ଲାଗନ୍ତି ବୋଲି ଲୋକେ ତହିଁରେ କୁମ୍ଭାରପାଉଁଶ ଗୋଳାଇ ଓଳିଆ ବାନ୍ଧି ରଖନ୍ତି ।

(୬) କେଉଁ ଜମିରେ କିପରି ବିହନ ଅବଶ୍ୟକ ଏବଂ କେଉଁ ଜମିରେ କେତେ ବିହନ ପଡ଼ିବାର କଥା ଏହା ନଜାଣି ଅନେକେ ଭ୍ରମରେ ପଡ଼ନ୍ତି । ବାରମ୍ବାର କରି କରି ଚଷାମାନଙ୍କର ଏଥିରେ ଗୋଟିଏ ଅଭ୍ୟାସ ପଡ଼ିଥାଏ । ଏଣୁ ପାଖ ଚଷାଙ୍କୁ ନପଚାରି କେହି ନୂଆ ଲୋକ ମନଇଚ୍ଛା

ବିହନର ବ୍ୟବହାର କରିବା ଠିକ୍ ନୁହେଁ । ପ୍ରତ୍ୟେକ ଫସଲ ସମ୍ପର୍କରେ ଏ କଥାର ଆଲୋଚନା କରାଯିବ ।

ଆମ୍ଭମାନଙ୍କର ପୂର୍ବ ପୁରୁଷରୁ ଯେଉଁ କେତେକ ବିହନ ଚଳିଆସୁଅଛି ସେତକ କେବଳ ଆଦାନପ୍ରଦାନକରି ଆମ୍ଭେମାନେ ବ୍ୟବହାର କରୁଅଛୁଁ । କୌଣସି ପ୍ରକାର ନୂତନ ବିହନ ଅନ୍ୟଠାରୁ ଆଣି ବ୍ୟବହାର କରିବାକୁ ଚେଷ୍ଟା କରୁନାହୁଁ । ଏହା ଠିକ୍ ନୁହେଁ । ଭିନ୍ନ ଭିନ୍ନ ସ୍ଥାନରୁ ଭିନ୍ନ ଭିନ୍ନ ବିହନ ସଂଗ୍ରହକରି ପରୀକ୍ଷାକରି ନିଜ ଜମିରେ ତା'ର ଆମଦାନୀ କଲେ ଅଧିକ ଲାଭ ହୋଇପାରେ । କେତେକ ସ୍ଥଳରେ ଏହା କରା ଯାଇଥାଏ । ଆଜିମଧ୍ୟ କେତେକ ସ୍ଥଳରେ ବିହନର ଅଭାବରେ ଅନ୍ୟସ୍ଥାନରୁ କିଣି ଆଣିବା ଆବଶ୍ୟକ ହୁଏ । ଅନେକ ସ୍ଥାନରେ ବିକ୍ରି ପାଇଁ ସ୍ଥାୟୀ ବିହନଦୋକାନ ମଧ୍ୟ ଅଛି ମାତ୍ର ବିହନ କିଣିବାବେଳେ ଉଲ୍ଲିଖିତ ସମସ୍ତ ବିଷୟ ଉତ୍ତମରୂପେ ଦେଖି କିଣିବା ଉଚିତ । ବିହନ ବାନ୍ଧିବାବେଳେ ନିଜର ଆବଶ୍ୟକତା ଅପେକ୍ଷା କିଛି ଅଧିକ ବାନ୍ଧିଥିଲେ ଦୁଇଟିକାମ ହୋଇପାରେ :—(୧) କୌଣସି କାରଣରୁ ଯଦି ଫସଲ ନଷ୍ଟ ହୋଇଗଲା ତେବେ ଆଉଥରେ ବୁଣିବାର ସୁବିଧା ହୁଏ; (୨) ଅଧିକ ବିହନଥିଲେ ଭଲ ଦାମ୍‌ରେ ବିକ୍ରି ହୋଇପାରେ । ଏଥିପାଇଁ ଚଷାମାନେ କିଛି କିଛି ଅଧିକା ବାନ୍ଧିଥାନ୍ତି ।

ବିହନ କିଣିବାବେଳେ କିମ୍ବା ପରିବର୍ତ୍ତନ କଲାବେଳେ ଖୁବ୍ ସାବଧାନ ହେବା ଉଚିତ । ବିହନର ଗଜାଇବା ଶକ୍ତି ପରୀକ୍ଷା କରିବାକୁ ଇଚ୍ଛାହେଲେ ଗୋଟିଏ କୁଣ୍ଡରେ କିଛି

ପରିଷ୍କାର ନଈ ବାଲିରେ ୧୦୦ଟ ମଞ୍ଜି ପୋତି କିଛି ପାଣୀ ଦେବାକୁ ହେବ । ୨୪ ଘଣ୍ଟା ରଖିବାପରେ ଯେତୋଟି ଗଜା ବାହାରିବ ତହିଁରୁ ସେହି ବିହନର ଶତକଡ଼ା ଗଜାଇବା ଶକ୍ତି ସ୍ଥିର କରିବାକୁ ହେବ ।

ଶାକଶବ୍‌ଜି ଇତ୍ୟାଦିର ବିହନ ଆମ୍ଭେମାନେ ଅନେକ ରଖିଥାଉଁ କିନ୍ତୁ ରଖିବା ଦୋଷରୁ ତାହା ପୋକ ଖାଇ ନଷ୍ଟହୋଇ ଯାଏ । ଏପରି ହେଲେ ଆମ୍ଭେମାନେ ସେହି ପୋକରା, ଖୋଚରା ବିହନକୁ ଲଗାଇ ଦେଇ ନିଶ୍ଚିନ୍ତହେବା ଠିକ୍ ନୁହେ । ତଟକା ବିହନ ଅନ୍ୟଠାରୁ ଆଣିବାକୁ ହେବ । ବିହନ ଯେତେ ପାକଲ, ପୁଷ୍ଟ ଓ ତଟକା ହୁଏ ସେତେ ଭଲ । ଏଣୁ କେହି କେହି ତଟକା ବିହନ ପାଇବା ପାଇଁ ଆଉ ଥରେ ସେହି ବିହନକୁ ଲଗାଇ ଥାନ୍ତି ମାତ୍ର ସବୁ ଫସଲରେ ଏହା ସମ୍ଭବ ନୁହେଁ ।

ମୋଟ ଉପରେ କହିବାକୁ ହେଲେ ଆମ୍ଭେମାନେ ବିହନ ସାଇତି ରଖିବା ବିଷୟରେ ନିତାନ୍ତ ଉଦାସୀନ । ଏପରି ଔଦାସୀନ୍ୟ ଛାଡ଼ିଦେଲେ ଦୁଃଖ ଘୁଞ୍ଚିଯିବ ।

**( ଚ ) କୃଷିର ଉପକରଣ**:—ସଭ୍ୟ ଜଗତରେ ଆଜିକାଲି କୃଷିପାଇଁ କେତେ ପ୍ରକାର ଲୁହା ଲଙ୍ଗଳ ଓ ଅନ୍ୟାନ୍ୟ ଉପକରଣ କଲେଣି । ଆମ୍ଭମାନଙ୍କର ବିଦା, ଯୁଆଳି, ମଇ, ଲଙ୍ଗଳ ଇତ୍ୟାଦି କାଠରେ ତିଆରି ଏବଂ ଏଥିରେ କେତେକ ଲୁହା ଲାଗିଥାଏ । ଗଡ଼ଜାତରେ କାଠ ଏତେ ସୁଲଭ ହେଲେ ମଧ୍ୟ ଅନେକ ଚଷା ଏ ଉପକରଣଗୁଡ଼ିକ ନକରି ଏଠେଇସେଠେଇ ମାଗି ବୁଲନ୍ତି । ଏଣୁ ଠିକ୍ ସମୟରେ କାମ ହୋଇ ପାରେ

ନାହିଁ । ଚଷା ତା'ର ପ୍ରତ୍ୟେକ ଉପକରଣ ଠିକ୍ କରି ରଖିବା ଉଚିତ । ମାଗିବାଦ୍ୱାରା ନିଜର ଯେପରି କ୍ଷତି, ଅନ୍ୟ ଚଷାର କାର୍ଯ୍ୟରେ ମଧ୍ୟ ସେହିପରି କ୍ଷତି । ଏ ସମ୍ପର୍କରେ ଅଧିକ କଥା କହିବା ଅନାବଶ୍ୟକ । ଆମର ଅନେକ ସ୍ଥାନର ମାଟି ପାହାଡ ନିକଟବର୍ତ୍ତୀ ହେବୁ ଟାଣ । ଏଣୁ ଦେଶୀ ଲଙ୍ଗଳ ତା'ର ଗୃଷ ପକ୍ଷରେ ଭଲ । ଆମ୍ବ, ଗୋହିରି, ଶାଳଇତ୍ୟାଦି କାଠରେ ଲଙ୍ଗଳ ହୁଏ । ଶାଳଲଙ୍ଗଳ ସବୁଠାରୁ ଭଲ । ଏହାଛଡ଼ା କୋଡ଼, ଶାବଳ ଇତ୍ୟାଦି କେତେ ଲୁହାର ଉପକରଣ ଚଷା ଜାଣିବାକୁ ବାଧ୍ୟ । ପ୍ରତ୍ୟେକ ଚଷାର ଖଣ୍ଡିଏ ଖଣ୍ଡିଏ ଶଗଡ଼ ରହିବା ଉଚିତ । ଏହା ବିଶେଷ ଆବଶ୍ୟକ ଅଥଚ ସେତେ ଖର୍ଚ୍ଚ ପଡ଼େ ନାହିଁ ।

**( ଡ଼ )** **ବଳଦ ଓ ପଣ୍ଡା**:—ବଳଦ ଓ ପଣ୍ଡା ଗୃଷର ପ୍ରଧାନ ସହାୟକ । ପଣ୍ଡା ଅପେକ୍ଷା ବଳଦ ଅଧିକ ଉପଯୋଗୀ । ଏଇ ଗୃଷପାଇଁ ଓ ଦୁଧପାଇଁ ଗାଈ ଆମ ଦେଶର ଏତେ ଆଦରର ଜନ୍ତୁ । ଆମର ଭଲ ଗୃଷ ହୋଇପାରେ ନାହିଁ ତା'ର ପ୍ରଧାନ କାରଣ ଆମର ଭଲ ବଳଦ ନଥାନ୍ତି । ଭଲ ବଳଦ ନଥାନ୍ତି—ତା'ର କାରଣ ଆମେ ସେମାନଙ୍କର ଯତ୍ନ ନେଉ ନାହିଁ । ଉପଯୁକ୍ତ ଗାଈ ଓ ଉପଯୁକ୍ତ ଷଣ୍ଢର ଅଭାବରୁ ଆମ ବଳଦଗୁଡିକ ନିତାନ୍ତ ଖର୍ବକାୟ ଓ ଦୁର୍ବଳ ହୁଅନ୍ତି । ଏ ଅଭାବ ଦୂର କରିବା ପାଇଁ ଉପଯୁକ୍ତ ଗାଈ ଓ ଷଣ୍ଢ ପୋଷିବା ଆବଶ୍ୟକ । ଆମ ରାଜ୍ୟରେ ଷଣ୍ଢର ଅଭାବ ଖୁବ୍ ବେଶୀ । କେତେକ ସର୍କାର ଷଣ୍ଢ ଛାଡିଦେଲେ ମଫସଲ ଗ୍ରାମମାନଙ୍କରେ ଉପଯୁକ୍ତ ଷଣ୍ଢ କ୍ୱଚିତ୍ ଦେଖାଯାଇ ଥାଏ । ଏ ଅଭାବ ଦୂର କରିବାପାଇଁ

ପ୍ରଥମେ ଗାଈର ତତ୍ତ୍ୱ ନେବାକୁ ହେବ ଏବଂ ଭଲ ବାଛୁରି ଦେଖି ବଳଦ ନକର ଷଣ୍ଢ଼ପାଇଁ ଛାଡଦେବାକୁ ହେବ । ଅନ୍ୟ ଅନ୍ୟ ସ୍ଥାନରୁ ଭଲ ଷଣ୍ଢ଼ ମଧ୍ୟ ଅଣା ଯାଇପାରେ । ସର୍କାର ତରଫରୁ ଆଜକାଲି ଭଲ ଷଣ୍ଢ଼ ମଧ୍ୟ ମଫସଲମାନଙ୍କରେ ରହିବାର ବ୍ୟବସ୍ଥା କରାଯାଇଅଛି । ଭଲ ବଳଦ ତ ନାହିଁ, ଯେଉଁମାନେ ଅଛନ୍ତି ସେମାନେ ମଧ୍ୟ ଭଲ କାମ ଦେଉନାହାନ୍ତି, ତାର କାରଣ ଯତ୍ନର ଅଭାବ । ସେ ଗୁଡ଼ିକ ଯେପରି ଛୋଟ, ସେହିପରି ଦୁର୍ବଳ ଏବଂ ଖୁବ୍ ଅଳ୍ପ ଦିନରେ ବୁଢ଼ା ହୋଇଯାନ୍ତି । ତାର କାରଣ :—

( ୧ ) କୃଷୀମାନଙ୍କର ସେମାନଙ୍କ ପ୍ରତି ଅନାସ୍ଥା ।

( ୨ ) ଉପଯୁକ୍ତ ଖାଦ୍ୟର ଅଭାବ ।

( ୩ ) ଅତ୍ୟଧିକ ପରିଶ୍ରମ ।

( ୪ ) ଦୁଷ୍ଟ ହଳିଆମାନଙ୍କ ହାତରେ ସେମାନଙ୍କ ପ୍ରତି ଅତ୍ୟାଚାର—ମାଡ଼, ଲାଙ୍ଗୁଡମୋଡ଼ା ଇତ୍ୟାଦି ।

( ୫ ) ରୋଗ ହେଲେ ଔଷଧ ବା ଚିକିତ୍ସାର ଅଭାବ ।

( ୧ ) କୃଷୀମାନେ କୃଷ କରିସାରି ଘରେ ନିଶ୍ଚିନ୍ତ ରହନ୍ତି । ହଳିଆମାନେ ବଳଦ ଫିଙ୍ଗାଇ ଦେଇ ନିଜ ଘରକୁ ଯାଆନ୍ତି । ଏଥି—ମଧ୍ୟରେ ବଳଦଙ୍କ ପାଖରେ କେଣ୍ଡାଏ ପାଳ ପକାଇ ଦେଲେ ହେଲା । ରାତିଯାକ ମଶା ଡ଼ାଉଁଶଙ୍କ ଅତ୍ୟାଚାର, ଭଙ୍ଗା ଗୁହାଳରେ ଘୋର ଶୀତାଳୁର, ତଳେ ଗୋବରମୂତ, ଖାଲ ଢିପରେ ଶୋଇବାର ଅସୁବିଧା—ଅଥଚ ରାତି ପାହିଲେ ହଳିଆ ପାଞ୍ଚଣବାଡ ଧରି ବଳଦକୁ ବିଲକୁ ନେବ । ଏଥିରେକ

ବଳଦ ଭଲ ହେବେ ? ଗୃଷ ଭଲ ହେବ ? କୃଷକ ଏସବୁ ପ୍ରତି ବିଶେଷ ଦୃଷ୍ଟିଦେବା ବିଧେୟ ।

(୨) କୁଣ୍ଡା, କୁଳ୍ଥି, ନଡା, ପାଲ, ଉତ୍ତମରୂପେ ବଳଦଙ୍କୁ ଖାଇବାକୁ ଦେବା ଉଚିତ । ଏକହଳ ବଳଦଙ୍କଠାରୁ ଆମେ ବର୍ଷରେ ଅନ୍ତତଃ ୧୦ଭରଣ ଧାନ ଓ ସେଇ ଅନୁପାତରେ ଅନ୍ୟାନ୍ୟ ଫସଲ ପାଇଥାଉଁ, କିନ୍ତୁ ସେହି ବଳଦଙ୍କ ପାଇଁ ଏକଭରଣ ଧାନ ଦୂରେ ଥାଉଁ, ଏକ ଭରଣ କୁଣ୍ଡା ସୁଦ୍ଧା ଖର୍ଚ୍ଚ କରୁ ନାହିଁ । ଏହିପରି ଗୋରୁଙ୍କ ନିଃଶ୍ୱାସରେ ଆମ ପେଟକୁ ଦାନା ଅଣ୍ଟୁନାହିଁ ସିନା ! ଘାସ, କ୍ଷୀର, ମୁଗଇତ୍ୟାଦି ରବି-ଫସଲର ବୋଝ ବଳଦମାନଙ୍କର ଉପଯୁକ୍ତ ଖାଦ୍ୟ । ପେଜ, ପିଡଆ ଏସବୁ ରୋଗ ସମୟରେ ଦେବା ବିଧେୟ । ନିଜ ଜମିରୁ କେତେକାଂଶ କେବଳ ଗୋରୁର ଘାସପାଇଁ ଛାଡ଼ି ଦିଆଯାଇ ପାରେ ।

(୩) **ପରିଶ୍ରମ** —ମନୁଷ୍ୟ ଯେପରି କେତେକ ସମୟ କାମକଲେ କ୍ଳାନ୍ତ ହୋଇ ପଡ଼େ ଏଣୁ ଦିନମାନ କେତେ ଘଣ୍ଟା କାମକରି ପାରିବ ତାହା ଠିକ୍ କରାଯାଇଅଛି ପଶୁମାନଙ୍କ ପକ୍ଷରେ ମଧ୍ୟ ଠିକ୍ ସେହିପରି ନିୟମ ରହିବା ଉଚିତ । ଅନେକ ଚଷା ବଳଦମାନଙ୍କୁ ଦୁଇଓଳି କାମ କରାନ୍ତି । ଅଉ କେହି କେହି ମଧ୍ୟ ଦିନ ୧୨ଟାଯାଏ କାମ କରିଇ ମଧ୍ୟ ତୃପ୍ତ ହୁଅନ୍ତି ନାହିଁ । ଏହା ଅନ୍ୟାୟ । ସକାଳେ ଭୋରରୁ ବଳଦମାନଙ୍କୁ କାମରେ ଲଗାଇ ଉପରଓଳି ଛାଡ଼ିଦେଲେ ସେମାନେ ମନଇଚ୍ଛା ଚରନ୍ତି । ପରିଶ୍ରମ ନିୟମିତ ହେଲେ ବଳଦମାନେ ସତେଜ ରହନ୍ତି ଏବଂ ଭଲ କାମ ଦିଅନ୍ତି ।

(୪) **ଦୁଷ୍ଟ ହଳିଆ**:—ହଳିଆମାନେ ବିରକ୍ତ ହୋଇ ବାଡ଼ ପାଖଣରେ ଖୁବ୍ ମାଡ଼ ଦିଅନ୍ତି ଏବଂ ଲାଙ୍ଗୁଡ଼ ମୋଡ଼ି ଗଣ୍ଡି-ଗଣ୍ଡିଆ କରି ଦିଅନ୍ତି । ସମୟ ଅତିରିକ୍ତ ହେଲେ ସେମାନେ ଶୁଇବାରେ ହଠ କରନ୍ତି । ସେତେବେଳେ ସେମାନଙ୍କୁ ବିଶ୍ରାମ ଦେବା ବିଧେୟ । ମୂର୍ଖ ଲୋକେ ତା ବୁଝିନପାରି ସେମାନଙ୍କୁ ଅଯଥା ପ୍ରହାର କରନ୍ତି । ଏହା ବନ୍ଦ କରିବାକୁ ହେବ ।

(୫) **ରୋଗ ଓ ଚିକିତ୍ସା**:—ପଶୁଚିକିତ୍ସାଳୟ କମ୍ ମଫସଲ ଗ୍ରାମମାନଙ୍କରେ ପଶୁରୋଗ ସମ୍ବନ୍ଧରେ କୌଣସି ପ୍ରକାର ପ୍ରଚାର ଆମ୍ଭମାନଙ୍କର ଗୋଟିଏ ପ୍ରଧାନ ଅଭାବ । କେତେକ ଠୁଣ୍ଠୁଣିଆ ଛାଡ଼ିଦେଲେ ସେପରି କୌଣସି ନିୟମିତ ଚିକିତ୍ସା କେହି ଜାଣନ୍ତିନାହିଁ । କେତେକ ଗଉଡ଼ ଯାହା ଜାଣନ୍ତି ତାହା ସେପରି କିଛି ନୁହେଁ । ଓଡ଼ିଆ ଭାଷାରେ ପଶୁଚିକିତ୍ସାର କୌଣସି ପୁସ୍ତକ ମଧ୍ୟ ନାହିଁ । ଏ ଅଭାବ ଦୂର କରିବା ବାଞ୍ଛନୀୟ । ରୋଗହେଲେ ଗୋରୁକୁ ପୂର୍ଣ୍ଣ ବିଶ୍ରାମ ଦେଇ ତାହାର ସେବା କରିବାକୁ ହେବ । ଏହା ନକଲେ ବଳଦ ଅଳ୍ପ ସମୟରେ ଅକର୍ମଣ୍ୟ ହୋଇଯିବେ । ଆମ୍ଭ ଷ୍ଟେଟ୍‌ରେ ପଶୁଚିକିତ୍ସକ ବା ଭେଟେରିନାରି ସର୍ଜନ ଅଛନ୍ତି । ସେ ମହୋଦୟ ଗ୍ରାମେ ଗ୍ରାମେ ବୁଲି ଲୋକମାନଙ୍କୁ ସାହାଯ୍ୟ ଦିଅନ୍ତି । ତାଙ୍କଠାରୁ ଆବଶ୍ୟକ ସାହାଯ୍ୟ ନେବାକୁ ସମସ୍ତେ ଚେଷ୍ଟା କରିବା ଉଚିତ ।

ବଳଦ ଓ ପଣ୍ଡା ମଧ୍ୟରେ ବଳଦ ଅଧିକ ଉପକାରୀ । ପଣ୍ଡାଦ୍ୱାରା ଅଧିକ କାମ ହେବ ବୋଲି କେହି କେହି ମନେ କରନ୍ତି ମାତ୍ର ତୁଳନାକରି ଦେଖିଲେ ଏହା ଠିକ୍ ନୁହେଁ । ଦେଶୀ ବଳଦ

ପଶୁ୍ୟା ଅପେକ୍ଷା ଅଧିକ ପରିଶ୍ରମ କରିପାରେ । ଶୀତ, ବର୍ଷା, ଗ୍ରୀଷ୍ମରେ ଯଥେଷ୍ଟ ପରିଶ୍ରମ କଲେ ମଧ୍ୟ ପଶ୍ୟାପରି ବଳଦ ଏତେ ଶୀଘ୍ର କ୍ଳାନ୍ତ ହୁଏ ନାହିଁ । ପଶ୍ୟା ଭିଷି ସୁକୁମାରିଆ ଏବଂ ବଳଦଅପେକ୍ଷା ବଳିଷ୍ଠରେ ଖୁଲେ—ପଶ୍ୟା ଥରେ ଲଙ୍ଗଳ ଟାଣିବା ବେଳକୁ ବଳଦ ପ୍ରାୟ ଦୁଇ କିମ୍ବା ତେଢ଼ଥର ଟାଣି ଥାଏ ।

କେହି କେହି ( ପାଣ ଜାତୀୟ ଲୋକ ) ଷଣ୍ଢକୁ ମଧ୍ୟ ଚାଷରେ ଲଗାନ୍ତି; ଏହା ଠିକ୍ ନୁହେଁ । ପାଣମାନେ ଷଣ୍ଢ ଧରାଇବାର ଦେଖିଲେ ସେମାନଙ୍କୁ ଖବର କରିବା ଅବଶ୍ୟକ । ଷଣ୍ଢ—ମାନଙ୍କର ଅଣ୍ଟାର ବଳ କମ୍; ଏଣୁ ଏମାନଙ୍କଦ୍ୱାରା ଭଲ ଚାଷ ହୁଏନାହିଁ । ଷଣ୍ଢ ଖିଆଳାକାର—ଏଣୁ ବଳଦମାନଙ୍କ ଅପେକ୍ଷା ବେଶୀ ପରିଶ୍ରମ କରି ପାରନ୍ତିନାହିଁ—ଅଧିକନ୍ତୁ ସେମାନେ ବଳଦପରି ବାଧ୍ୟ ହୁଅନ୍ତି ନାହିଁ ।

ବଳଦମାନେ କୃଷକଙ୍କୁ ଖତରେ ମଧ୍ୟ ସାହାଯ୍ୟ କରନ୍ତି । ବଡ଼ ବଳଦ ହେଲେ ପ୍ରାୟ ୫୦ ମହଣ ଖତ ଓ ୧୪ ମହଣ ମୂତ୍ର ଦେଇଥାଏ । ଦୁଇ ତିନିହଳ ବଳଦରୁ ଯଥେଷ୍ଟ ପରିମାଣ ସାର ମିଳେ । ସାର ଓ କର୍ଷଣ ଉଭୟ କାର୍ଯ୍ୟରେ ଏହିପରି ପ୍ରଭୂତ ସାହାଯ୍ୟ କରୁଥିବାରୁ ବଳଦର ବିଶେଷ ଯତ୍ନନେବା ଅବଶ୍ୟକ ।

( ଜ ) **ନଈକୂଳ ଜମି:**—ବ୍ରାହ୍ମଣୀନଦୀ ଆମ ରାଜ୍ୟର ପଶ୍ଚିମ ସୀମାରୁ ପୂର୍ବସୀମା ପର୍ଯ୍ୟନ୍ତ ପ୍ରବାହିତ । ରାମିଆଳ, ଡମଶାଳ, ଲିଙ୍ଗରା, ସାପୁଆ ଇତ୍ୟାଦି କେତେକ ଛୋଟନଦୀ ମଧ୍ୟ ଏଥିମଧ୍ୟରେ ପ୍ରବାହିତ । ଏମାନଙ୍କଦ୍ୱାରା ବର୍ଷାଦିନରେ

ଭୀଷଣ ବନ୍ୟାରେ କୂଳସ୍ଥିତ ବହୁତ ଜମି ଜଳପ୍ଲାବିତ ହୁଏ ଏବଂ ତୀରବାସିମାନଙ୍କର ବିଶେଷ କ୍ଷତି ଘଟେ । ଧାନ ଫୁଲଉଚ୍ଛାଇଲାବେଳେ, ଛୋଟଛୋଟ ଥିଲାବେଳେ, ପାଚିଲା-ବେଳେ କେତେବେଳେ ହଠାତ୍ ବଢ଼ିଆସି ଚଷାକୁଳର ସର୍ବନାଶ କରେ । ଏହା ଦୈବ-ପ୍ରତିବନ୍ଧକ । ଏହାର ପ୍ରତିକାର ଖୁବ୍ କମ୍ । ନଈରୁ ଅନେକ ମୁହାଣ ଭଙ୍ଗି ବିଲମଧ୍ୟରେ ପ୍ରବେଶ କରିଥିବାରୁ ନଈରେ ଅଳ୍ପ ପାଣି ଆସିଲେ ମଧ୍ୟ ହଠାତ୍ ବିଲକୁ ମାଡିଆସେ । ନଦୀର ଶଯ୍ୟା ଏହି ମୁହାଣ ଅପେକ୍ଷା ଉଚ୍ଚହୋଇ ଥିବାରୁ ପାଣୀ ଶୀଘ୍ର ଆସିଥାଏ । ଏହି ମୁହାଣସବୁ ବନ୍ଧଦ୍ୱାରା ବନ୍ଧାଇ ଦେଲେ ବିଲସବୁ ବାଲିଚର ହେବାର ଆଶଙ୍କା କମିଯାଏ । ନଦୀଶଯ୍ୟା ଉଚ୍ଚ ଥିଲେ କାଲକୁ ଦୁଇପାଖକୁ ଖୋଲି ଦିଆଯାଇ ପାରେ । ଲୋକେ ଏହାକୁ ଅସମ୍ଭବ ମନେକରି ପାରନ୍ତି କିନ୍ତୁ ଏ ଉପାୟରେ କେତେକ ଛୋଟ ଛୋଟ ନଦୀର ଭୀଷଣ ବନ୍ୟାରୁ ଅଳ୍ପ ବ୍ୟୟରେ ରକ୍ଷା ମିଳିପାରେ । ଏ ଦିଗରେ ଅସଂଖ୍ୟ ଲୋକଙ୍କର ସମୂହ ଚେଷ୍ଟା ନହେଲେ ଏବଂ ରାଜଶକ୍ତି ତହିଁରେ ଯୋଗ ନଦେଲେ ଏସବୁ କାର୍ଯ୍ୟ ସମ୍ଭବ ହୋଇ ନପାରେ ।

( ୯ ) **ଶସ୍ୟନଷ୍ଟକାରୀ କୀଟପତଙ୍ଗ**—ନିମ୍ନଲିଖିତ କୀଟପତଙ୍ଗ ଓ ପଶୁପକ୍ଷୀମାନେ ଶସ୍ୟର ଅନିଷ୍ଟକାରୀ । ଏମାନଙ୍କଠାରୁ ଶସ୍ୟ ରକ୍ଷାକରିବା ବିଧେୟ ।

**କୀଟ**:—ମହୁଆ, ରଙ୍ଗି, ଧଳିକି, ହଳଦିଗୁଣ୍ଡି, ସିଁବାଳୁଆ, ଓଇ, ଯଉଆ ଇତ୍ୟାଦି । ଏମାନେ ଗଛମୂଳରେ ଡିମ୍ବ ଦିଅନ୍ତି ଏବଂ ଅତିଶୀଘ୍ର ଏମାନଙ୍କର ଛୁଆ ବଡ଼ ହୋଇ ସିନ୍ଧାର ଦେଖାଯାଏ । ମାଟି ଭଲ ଚଷ ଓ ବେଉଷଣ ହେଲେ ଏମାନେ

ମରଯାନ୍ତି । ଗଛମୂଳ ପାଣିରେ କିରାସିନ ପକାଇଲେ କେତେକ ଉପକାର ହୋଇପାରେ ।

**ପତଙ୍ଗ:**—ଝିଣ୍ଟିକା-ଏମାନେ ବିଲରେ ଓ ବଣରେ ରହନ୍ତି, ଘାସ ପତ୍ରଆଦିରେ ମଧ୍ୟ ଥାନ୍ତି । ବେଳେ ବେଳେ ଦଳଦଳ ହୋଇ ଦଳ କିଆରୀରେ ପଡ଼ି ଗଛ କାଟି ପକାନ୍ତି । ଏମାନଙ୍କ ବଂଶ ନାଶ କରିବା ବିଧେୟ । ବଗିଚାରେ କୋବି, ମୂଳା ଇତ୍ୟାଦିର ଶ୍ରେଷ୍ଠ ଶ୍ରେଷ୍ଠ ଗଜା ଏମାନେ କାଟି ନଷ୍ଟ କରନ୍ତି ।

**ପକ୍ଷୀ:**—ଶୁଆ, କାବତ, ଘରଚଟିଆ ଓ ପାରା; ଏମାନେ ଶସ୍ୟର ଅନିଷ୍ଟକାରୀ । କାଉ, ବଗ, ବଣି, ଏମାନେ ବିଲରୁ କୀଟପତଙ୍ଗ ଖାଇଯିବାରୁ ଶସ୍ୟର ମଙ୍ଗଳକାରୀ । ଶୁଆମାନେ ଦଳଦଳ ହୋଇ ବେଳେବେଳେ ଜଙ୍ଗଲପାଖ ଜମିର ବିଶେଷ ଅନିଷ୍ଟ ସାଧନ କରନ୍ତି । ମଧ୍ୟେ ମଧ୍ୟେ ଫଟକା ଓ ବନ୍ଧୁକ ଇତ୍ୟାଦିର ଶବ୍ଦ ଶୁଣିଲେ ଏମାନେ ଭୟ କରି ଆସନ୍ତି ନାହିଁ ।

**ପଶୁ:**—ମିରିଗ, ସମ୍ବର, ବାଘ, ଭାଲୁ, ହାତୀ ଓ ମାଙ୍କଡ଼; ଏମାନେ ଶସ୍ୟର ପ୍ରଧାନ ଶତ୍ରୁ । ଏମାନଙ୍କଦ୍ୱାରା ବେଳେ-ବେଳେ ଏପରି ଅନିଷ୍ଟ ହୁଏ ଯେ ଚଷାର ସର୍ବନାଶ ଓ ବଂଶଧ୍ୱଂସ ହୁଏ କହିଲେ ଚଳେ । ଏମାନେ ପଲପଲ ହୋଇ ଶସ୍ୟକ୍ଷେତ୍ରକୁ ଆସି ଖାଇ ଦଳି ଭୟଙ୍କର କ୍ଷତି କରନ୍ତି । ଏମାନଙ୍କଠାରୁ ଫସଲ ରକ୍ଷା କରିବାପାଇଁ ବିଶେଷ ଚେଷ୍ଟା ହେବା ବାଞ୍ଛନୀୟ । ପୂର୍ବେ ଲୋକମାନେ ରବିଫସଲ, ଆଖୁ, କପାଇତ୍ୟାଦି ଯେତେ ପରିମାଣରେ କରୁଥିଲେ ଆଜିକାଲି ତାହାର ଏକଚତୁର୍ଥାଂଶ ସୁଦ୍ଧା କରୁ ନାହାନ୍ତି । କେବଳ ଏହି ବନ୍ୟଜନ୍ତୁମାନଙ୍କ ଭୟ ହେତୁ । ଖେଦାଦ୍ୱାରା ହାତୀ-

ମାନଙ୍କୁ ଧରାଯିବାରୁ ତଦ୍ୱାରା ଅନେକ ଉପକାର ହେଉଅଛି । ଅନ୍ୟାନ୍ୟ ଜନ୍ତୁମାନଙ୍କୁ ମାରିବାପାଇଁ ଲୋକେ ଅନୁମତି ପାଇବା ଆବଶ୍ୟକ । ଅବଶ୍ୟ ଜଙ୍ଗଲବିଭାଗର ଆଇନାନୁସାରେ ଲୋକେ ବନ୍ୟଜନ୍ତୁ ଶିକାର କରିବା ନିଷିଦ୍ଧ, ତଥାପି ଏହି କୃଷି ରକ୍ଷା ପାଇଁ କ୍ଷେତ ଅମଦାନ ସମୟରେ ପଶୁପକ୍ଷୀମାନଙ୍କୁ ମାରିବା ପାଇଁ ସର୍କାରରୁ ଅକ୍ଳେଶରେ ଲାଇସେନ୍ସ ମିଳିପାରେ ।

ହନୁ ଓ ପାତିମାଙ୍କଡମାନେ ବିଶେଷ ଅନିଷ୍ଟକାରୀ । ଲୋକେ ଧର୍ମ ଭୟରେ ଏମାନଙ୍କୁ ମାରନ୍ତି ନାହିଁ । ଏମାନେ କିନ୍ତୁ ଲୋକମାନଙ୍କର ଏ ଉଦାରତା ଓ ଧର୍ମଭୀରୁତାକୁ ଉପେକ୍ଷାକରି ଯଥେଚ୍ଛା ଅନିଷ୍ଟ କରନ୍ତି । ଉଦ୍ୟାନରେ ଏମାନଙ୍କର ଅତ୍ୟାଚାର ବିଶେଷ କଷ୍ଟପ୍ରଦ । ଏମାନଙ୍କଠାରୁ ଫସଲ ରକ୍ଷା କରିବାପାଇଁ ଚେଷ୍ଟା କରାଯାଇପାରେ ।

**ବନ୍ୟଜନ୍ତୁଭିନ୍ନ ଗ୍ରାମ୍ୟପଶୁ**—ଗୋରୁ, ମହିଷ, ଘୋଡା, ଛେଳି ଇତ୍ୟାଦି ବିଶେଷ କ୍ଷତି କରିଥାନ୍ତି । ଗ୍ରାମର ଧନୀଲୋକ ଓ କ୍ଷମତାଶାଳୀ ଲୋକମାନଙ୍କର ଗୋରୁ, ଷଣ୍ଢ, ଛେଳିଇତ୍ୟାଦି ଦୁଃଖୀଲୋକମାନଙ୍କର ଫସଲ ଉଜାଡ଼ି ଦିଅନ୍ତି । ଏଥିପାଇଁ କାଇନ୍‌ହାଉସ୍ କରାଯାଇଥିଲେ ମଧ୍ୟ ନିଜେ ନିଜେ ସାବଧାନ ନହେଲେ ଚଷାର ଅନିଷ୍ଟ ହୁଏ । କାଇନ୍‌ହାଉସରେ ପଶୁ ଦେଲେ ମଧ୍ୟ ଚଷା ତା'ର କ୍ଷତିପୂରଣ କରିପାରେ ନାହିଁ । ଷଣ୍ଢମାନେ ମହାଦେବଙ୍କର ବାହନ ବୋଲି ଲୋକେ ତାକୁ ତଡ଼ନ୍ତି ନାହିଁ—ଏହାଠିକ୍ ନୁହେଁ ।

**( ଝ ) ଅବହେଳା ଓ କୁସଂସ୍କାର**—'କୃଷି ତରତର ବଣିକ ମଠ' ଏହି ଋଷିବାକ୍ୟକୁ ଭୁଲିଯାଇ 'ହଁ କରିବା,

ହିଁ କରିବାତ' ଏହିପରି ମନେ କରି କେତେକ ଲୋକ ଠିକ୍ ସମୟରେ କାର୍ଯ୍ୟ କରନ୍ତି ନାହିଁ । ଏହାର ଫଳରେ ଏପରି ଅସୁବିଧା ହୁଏ ଯେ ଯେଉଁକାମ ହୁଏତ ଆଉ ହୋଇ ପାରେ ନାହିଁ । "ଚଷା ହୁଡିଲେ ବରଷେ" ଏହି ନୀତି ବାକ୍ୟ ମଧ୍ୟ ମନେ ରଖିବାକୁ ହେବ । ଚାଷ , ବେଉଷଣ , ବୁଣା ଏ ସବୁ କାମ ଯେତେ ଶୀଘ୍ର ଶୀଘ୍ର କରି ଯାଇପାରେ ତାହା କରିବା ବିଧେୟ । ଅବଶ୍ୟ ପାଖଚଷାକୁ ଦେଖି କାମ କରିବା ଉଚିତ । ସମୟର ଆଗରୁ ଓ ପଛରେ ମଧ୍ୟ କେତେକ କାମ କରିଯାଇ ପାରେ । ସ୍ଥାନୀୟ ଅବସ୍ଥା ଓ ଋତୁଉପକ୍ରମ ଦେଖି ସମସ୍ତେ ନିଜର ବୁଦ୍ଧି ପ୍ରୟୋଗ କରି ଏହା କରିବା ଉଚିତ । ବେଉଷଣବେଳେ ପାଣିପ୍ରତି ଦୃଷ୍ଟି ନଦେଲେ ହଠାତ୍ ଅନାବୃଷ୍ଟି ହେଲେ ବେଉଷଣ ହୋଇ ପାରେ ନାହିଁ । ସେହିପରି ଅମଦାନି ସମୟରେ ଶୀଘ୍ର ଶୀଘ୍ର କାମ ନକଲେ ସବୁ ଉଜୁଡି ଯାଇ ପାରେ ।

ଆମ୍ଭମାନଙ୍କର ଜାତି, ସମାଜ, ଧର୍ମମତ ନେଇ କେତେଗୁଡ଼ାଏ କୁସଂସ୍କାର ଆମ୍ଭମାନଙ୍କର କୃଷିରେ ମଧ୍ୟ ପ୍ରବେଶ କରିଛି । ବ୍ରାହ୍ମଣ ହଳ କରିବ ନାହିଁ— ଅଳୁ, ଦୋକଡା, ମୂଳା ଇତ୍ୟାଦି କରିବ ନାହିଁ , ଅଥଚ ଭିକ ମାଗି ପେଟ ପୋଷିବ । କରଣ ଚାଷ କରିବ ନାହିଁ — ଅଥଚ ଅନ୍ୟର ପୂଜାରୀ ବା ପିଅନ କାର୍ଯ୍ୟକରିବ । ଅମୁକ ଅଳୁ କଲେ ବଂଶ ବୁଡିବ । ବ୍ରାହ୍ମଣେତର ଜାତି ନଡିଆ ଲଗାଇଲେ ମୁଣ୍ଡ ଖାଇବ — ଏସବୁ ପ୍ରବେଶ କରି ଅନେକଙ୍କୁ ଅବାଧ କୃଷି କରିବାରେ ବାଧାଦିଏ । ଲୋକେ ବି ମୃତ୍ୟୁର ଆଶଙ୍କା କରି ତାହା କରନ୍ତି ନାହିଁ କିନ୍ତୁ ଏଗୁଡା ନିହାତି ବାଜେକଥା । ଏଥିରେ ଆଦୌ

ବିଶ୍ୱାସ ସ୍ଥାପନ କରିବା ଉଚିତ ନୁହେଁ । କୃଷିଦ୍ୱାରା ପେଟ ପୋଷିଲେ କାହାର କୌଣସି ଦୋଷ ହେବ ନାହିଁ ।

**( ଟ ) କୃଷି ସମ୍ବନ୍ଧୀୟ ଜ୍ଞାନ**—ଆଜିକାଲି ନାନା ଉପାୟ ଆବିଷ୍କାର କରି ଲୋକେ କୃଷିର ଉନ୍ନତି କଲେଣି । ବର୍ତ୍ତମାନ ପ୍ରଧାନ ପ୍ରଧାନ ସ୍ଥାନମାନଙ୍କରେ ବଡ଼ ବଡ଼ କୃଷି ଫାର୍ମମାନ ପ୍ରତିଷ୍ଠିତ ହୋଇ ସେଠାରେ ଲୋକମାନଙ୍କୁ ବୈଜ୍ଞାନିକ ପ୍ରଣାଳୀର ଆଦର୍ଶ ଦେଖାଇ ଦିଆ ଯାଉଅଛି । ଯେଉଁମାନେ ଏ ସବୁ ଶିକ୍ଷା କରିବାକୁ ଇଚ୍ଛା କରିବେ ସେମାନେ ଏହି ଫାର୍ମମାନଙ୍କୁ ଯାଇ ଶିକ୍ଷା କରି ପାରନ୍ତି ।

ରାଜ୍ୟରେ ସର୍କାର କୃଷି ବିଷୟର ବିଶେଷଜ୍ଞମାନଙ୍କୁ ନିଯୁକ୍ତ କରିବାରୁ ସେମାନେ ବିଭିନ୍ନ ସ୍ଥାନରେ ବୁଲି ଲୋକମାନଙ୍କୁ ଶିକ୍ଷାଦେଇ କାର୍ଯ୍ୟକ୍ଷେତ୍ରରେ ଆଦର୍ଶ ଦେଖାଉ ଅଛନ୍ତି । ଆଉ ମଧ୍ୟ ବିଭିନ୍ନ ପରିଦର୍ଶକ କର୍ମଚାରୀମାନେ ଓ ବଡ ବଡ଼ ଅଫିସରମାନେ ଏ ବିଷୟରେ ଲୋକମାନଙ୍କୁ ଆବଶ୍ୟକ ଉପଦେଶ ଦେଇ ପାରିବେ ।

ପୁନଶ୍ଚ କୃଷି ବିଷୟରେ ଅଭିଜ୍ଞ ଲୋକମାନଙ୍କର ଅଭିମତମାନ ପୁସ୍ତକ ଓ ପତ୍ରିକା ଆକାରରେ ପ୍ରକାଶିତ ହେଉଅଛି । ଏ ସବୁ ପଲ୍ଲୀଗ୍ରାମରେ ଲୋକମାନେ ପାଇବାର ସୁବିଧା ହେଲେ ବିଶେଷ ଉପକାର ହୋଇପାରେ । ଗ୍ରାମର କୋଠଘରମାନଙ୍କୁ ଏ ସବୁ ପତ୍ରିକା ମଗାଇବା ଉଚିତ । ଗ୍ରାମବାସିମାନେ ଏଥିପାଇଁ ଯତ୍‌ସାମାନ୍ୟ ଚାନ୍ଦା ଦେଇ ପାରନ୍ତି । ବକ୍ତୃତାଦ୍ୱାରା ଯାହା କାମ ନହୁଏ ପାଖରେ ବସିଥିଲେ ଏବଂ ନିଜେ କାର୍ଯ୍ୟକ୍ଷେତ୍ରରେ କାମ ଶିଖିଥିଲେ ତା'ଠାରୁ ଆହୁରି ଭଲ ହୁଏ ।

(୦) ଅର୍ଥସମସ୍ୟା—ଉପରେ ଯେତେ ଯେତେ କଥା କୁହାଗଲା ଏ ସବୁ ପାଇଁ ଅର୍ଥ ଆବଶ୍ୟକ । ଯେଉଁମାନଙ୍କର ପୂର୍ବରୁ ଜମି ଅଛି ଓ ଆବଶ୍ୟକ ଉପକରଣ ଇତ୍ୟାଦି ଅଛି ସେମାନଙ୍କର ବିଶେଷ ଚିନ୍ତା ନଥାଏ । କିନ୍ତୁ ନୂଆ ଲୋକକୁ ପ୍ରଥମେ ଅର୍ଥ-ଚିନ୍ତା କରିବାକୁ ପଡ଼େ । ମାତ୍ର ସେ ଯଦି ପ୍ରଥମେ କିଛି ଟଙ୍କା ଧାର ବା କରଜ କରି କାମ ଆରମ୍ଭ କରିପାରେ ତେବେ ଉଲ୍ଲିଖିତ ରୀତିରେ କୃଷିର ଉନ୍ନତି କରି ପାରିଲେ ଅଳ୍ପକାଳ ମଧ୍ୟରେ କରଜ ସୁଝି ଦେଇ ଅଧିକ ଲାଭବାନ୍ ହୋଇପାରେ ।

ଗ୍ରାମବାସିମାନେ ସମସ୍ତେ ମିଳି କୃଷିର ଉନ୍ନତିକଲେ ଗୋଟିଏ ଗୃହା କରି ପାରନ୍ତି । ଏ ଗୃହା ସେମାନଙ୍କର ଦେଶକୋଠ ଗୃହାରୂପେ ସଞ୍ଚିତହେଲେ ଆବଶ୍ୟକ କାର୍ଯ୍ୟରେ ଲାଗିପାରେ । ଅନେକ ସ୍ଥାନରେ ଏପରି କେତେକ ଦେଶ-କୋଠ ପାଣ୍ଠିଥାଏ ମାତ୍ର ଗ୍ରାମବାସୀ ତାହାର ସଦ୍‌ବ୍ୟବହାର କରି ନଜାଣି ଭୋଜି, ନାଚ, ପୂଜାନାଚଇତ୍ୟାଦିରେ ଉଡ଼ାଇ ଦିଅନ୍ତି । ଏହା ନକରି ସେମାନେ ଅନ୍ୟାନ୍ୟ ଅନେକ କାମ କରି ପାରନ୍ତେ; ଯଥାः—

(୧) ଗୋରୁମାନଙ୍କର ଉନ୍ନତି ପାଇଁ ଭଲ ଭଲ ଷଣ୍ଢ ପାଳିବା ।

(୨) କୃଷିସମ୍ବନ୍ଧୀୟ ପୁସ୍ତକାଦି କିଣିବା ।

(୩) ବିପନ୍ନଲୋକକୁ ବିହନ ଇତ୍ୟାଦି ସାହାଯ୍ୟକରିବା ।

(୪) ବିଦେଶରୁ ଭଲ ବିହନ ଓ ସାର ମଗାଇବା ।

(୫) ନଈ ନାଳି ମୁହାଣ ଇତ୍ୟାଦି ବନ୍ଧ କରିବା ।

(୬) କେନାଲ ବା ବନ୍ଧ ଖୋଳାଇବା ।

( ୭ ) ଅବଶ୍ୟକବେଳେ ଲୋକଙ୍କୁ କରଜ ଦେଇ ଖୁବ୍ ଅଳ୍ପ ସୁଧରେ ସେମାନଙ୍କଠାରୁ ଅସୁଲ କରିବା ( ଏଦ୍ୱାରା ଲୋକେ ମଧ୍ୟ ମହାଜନମାନଙ୍କ ଅତ୍ୟାଚାରରୁ ରକ୍ଷା ପାଇ ପାରନ୍ତି ) ।

ଏହି ଅର୍ଥ ବା ପାଣ୍ଠି ନିମ୍ନଲିଖିତ ଉପାୟରେ ସଞ୍ଚୟ କରା ଯାଇପାରେ : —

( ୧ ) ଦେଶକୋଠ ଜମି ଓ ଆମ୍ବତୋଟା ଇତ୍ୟାଦିର ଫସଲ ବିକ୍ରି କରି ।

( ୨ ) ମୁଷ୍ଟି ଭିକ୍ଷା :—ପ୍ରତ୍ୟେକ ଘରୁ ପ୍ରତିମାସରେ ଥରେ ଲେଖାଏଁ ସଂଗ୍ରହ କରାଯିବ ।

( ୩ ) ଖୁବ୍ ଅଳ୍ପ ଦରର ଗୋଟାଏ ଚାନ୍ଦା । ( ବାର୍ଷିକ କମ୍ବା ମାସିକ ) ।

( ୪ ) ଯାତ୍ରା , ଭୋଜି , ମହୋତ୍ସବ ଇତ୍ୟାଦିର ବ୍ୟୟ-ସଙ୍କୋଚ ।

( ୫ ) ଧାନଗୋଲା — କୃଷକମାନଙ୍କଠାରୁ ବାର୍ଷିକ କିଛି କିଛି ଧାନ ସଂଗ୍ରହ କରି ତାହାର ସଞ୍ଚୟ ଓ କରଜ ଦେଇ ତାକୁ ବଢ଼ାଇବା । ଅବଶ୍ୟକବେଳେ କୃଷକମାନେ ଅଳ୍ପ ସୁଧରେ ଏହି ଧାନ କରଜ ନେଇ ପାରନ୍ତି ।

ଏହି ଟଙ୍କାରୁ ଟଙ୍କା ଧାର ନେଇ ଲୋକେ ନୂତନ ଜମି ଭାଙ୍ଗିବା , ବଳଦ , ଲଙ୍ଗଳଇତ୍ୟାଦି କିଣିବା କିଂବା ଭଲ ବିହନ କିଣିବା ଆଦି କାମ କରି ପାରିବେ । ସେମାନେ ତାଙ୍କ କୃଷିରୁ ଲାଭ ପାଇ ସେହି ଲାଭରୁ କିଯ୍ଦଂଶ ସୁଧସ୍ୱରୂପ ଏହି ଗ୍ରନ୍ଥାକୁ ଦେବେ ଏବଂ ମୂଳ ଟଙ୍କା ଦେବେ । ତାହାହେଲେ ପାଣ୍ଠି କ୍ରମେକ୍ରମେ ବଢିବ । ମାତ୍ର ଏ ଟଙ୍କା ଗ୍ରାମର କେତେକ ବିଶିଷ୍ଟ ଭଦ୍ର ଲୋକଙ୍କ ଜିମାରେ ଗଚ୍ଛିତ ରହିବା ଉଚିତ । ଏହାର ଆୟବ୍ୟୟର ଭାର ସେପରି ବିଶ୍ୱାସୀ ଭଦ୍ର ଲୋକଙ୍କଠାରେ ଅର୍ପିତ ନହେଲେ ଏହାଦ୍ୱାରା ଗ୍ରାମର ନାନା ଗୋଳମାଳ ସୃଷ୍ଟି ହୋଇପାରେ ।

---

## ୨ୟ ଅଧ୍ୟାୟ ।

ପୂର୍ବ ଅଧ୍ୟାୟଲିଖିତ ସକଳ କଥା ଆଲୋଚନା କରି ସାରିବା ପରେ ଜମିଟିଏଁର, ମାଟିର ଉର୍ବରତା ଓ ମାଟି ଚାଷି ତଦନୁସାରେ ଫସଲ କରିବା ସମ୍ପର୍କରେ କେତେକ କଥା କହିବାକୁ ଇଚ୍ଛା କରୁଅଛୁଁ । ଯେ କୌଣସି ଫସଲ କରିବାକୁ ହେଲେ ପ୍ରଥମେ ଜମିର ଅବସ୍ଥା ଓ ଗୁଣ ବୁଝିବାକୁ ହେବ । ଏ ଷ୍ଟେଟ୍‌ରେ ଜଙ୍ଗଲ ଓ ପାର୍ବତୀୟ ଭୂମି ଅଧିକ; ଅନେକ ସ୍ଥାନରେ ଜଙ୍ଗଲ କଟାହୋଇ କାଲକ୍ରମେ ଜମି ତିଆରି କରା ଯାଇଅଛି । ଆଉ ଅନେକ ସ୍ଥାନରେ ସମତଳ ଭୂମି ମଧ୍ୟ ଅଛି । ଜଙ୍ଗଲ-କଟା ଜମିକୁ ଡଙ୍ଗଲା କହନ୍ତି — ପରେ ଏହା ତିଆରି ହେଲେ ସମତଳ ଭୂମି ଅଟଲ ଜମିରେ ପରିଣତ ହୋଇ ଥାଏ ।

ସ୍ଥାନ ଓ ଫସଲଭେଦରେ ଜମିର ବିଭିନ୍ନ ନାମ:—

କ—ସ୍ଥାନ ଭେଦରେ :—

୧—ନିମ୍ନ ସମତଳ ଭୂମି ( ଖାଲ )
୨—ଉଚ୍ଚଜମି ( ପଣି ଢିପ )
୩—ନଈକୂଳ ( ପଣି ଅଟଲ )
୪—ନଈକୂଳ ପାଳ
୫—ଡଙ୍ଗଲା ( ଜଙ୍ଗଲ କଟାହୋଇ ତିଆରି ହୋଇଥିବା )
୬—ଘରବାଡ଼ି ଉଦ୍ଧ ।

ଖ—ଫସଲର ଉପଯୋଗିତା ଅନୁସାରେ:—

ଧାନଜମି , ରବିଫସଲ ଜମି, ବଗିଚ୍ଚ ଜମି ।

ଗ—ଫସଲର ସଂଖ୍ୟା ନେଇ:—

୧ ଏକଫସଲ—ଯେଉଁଠି ବେଶୀ ପାଣୀ ରହେ ଓ ବଡ଼ଧାନ ହୁଏ ।

୨ ଦୋଫସଲ—ଧାନ ପରେ ଅନ୍ୟ କୌଣସି ଗୋଟାଏ ଫସଲ ହୋଇ ପାରେ ।

୩ ବାରମାସି—ସବୁ ସମୟରେ ଫସଲ ହୋଇପାରେ ।

ଘ—ଉର୍ବରତା ନେଇ :—

ଅଉଲ, ଦୋୟମ, ସୋୟମ, ହୋରମ ।

## ମାଟି ।

ସାଧାରଣତଃ ଚଅଗେ ପ୍ରକାର ମାଟି ଦେଖା ଯାଇଥାଏ :—

**( ୧ ) ବାଲିଆ ମାଟି :—** ଏଥିରେ ବେଶୀ ବାଲି । ଶତକଡ଼ା ୧୦ଭାଗରୁ ଅଧିକ କାଦୁଅ ନଥାଏ । ଓଦାବେଳେ ଶକ୍ତ, ଶୁଖିଗଲେ ନରମ ଏବଂ ଅଳ୍ପ ପରିଶ୍ରମରେ ଚଷହୁଏ । ଶୀଘ୍ର ତାତେ, ଶୀଘ୍ର ଥଣ୍ଡା ହୁଏ । ଏପରି ମାଟିରେ ବାଜରା, ଚିନା, ତରଭୁଜ, କାକୁଡ଼, କଖାରୁ, ପଟୋଳ, ଚିନାବାଦାମ ,କନ୍ଦମୂଳ ଓ କୋଳଥ ପ୍ରଭୃତି ହୁଏ ।

**( ୨ ) ଦୋରସା** :— ଏଥିରେ ବାଲି ଓ କାଦୁଅ ପ୍ରାୟ ସମାନ । କାଦୁଅ ୪୦ରୁ ୭୦ ଭାଗ ସ୍ଥାନେସ୍ଥାନେ ଦେଖାଯାଏ । ଏହା ଭଲ ମାଟି । ଏଥିରେ ସବୁପ୍ରକାର ଫସଲ କରା ଯାଇପାରେ । ଧାନ, ମୁଗ,

ବୁଟ, ଅଖୁ, ହଳଦି, ଫୁଲକୋବି, ଅଦା ଇତ୍ୟାଦି ।

ଏହି ମାଟିରେ ବର୍ଷ ମଧ୍ୟରେ ୩ଗୋଟି ଫସଲ ମଧ୍ୟ କରାଯାଇ ପାରେ । ତାହାହେଲେ ପାଣି ଓ ସାରର ବହୁତବ୍ୟବସ୍ଥା କରିବାକୁ ହେବ ।

( ୩ ) **ମଟାଳ**:— ଚାଷ ଓ ପାଣିର ସୁବିଧା କଲେ ଏଥିରେ ମଧ୍ୟ ୨ଗୋଟି ଫସଲ କରା ଯାଇପାରେ । ଏଥିରେ ବାଲିର ଦୁଇଗୁଣ କାଦୁଅ ଥାଏ । ଶାରଦଧାନ, ଅଖୁ, ଗହମ ଓ ବୁଟ ଏଥିରେ ହୋଇପାରେ ।

( ୪ ) **ବାଲିଆ**:— ଚକଟା ବାଲି କାଦୁଅର ଦୁଇଗୁଣ; ଏଥିରେ ବିଲାତିଆଳୁ ଭଲ ହୁଏ । ଏହା ଛଡା ବିଅଲିଧାନ, ବୁଟ, ଝୋଟ ଓ ହରଡ ପ୍ରଭୃତି ମଧ୍ୟ ହୁଏ ।

( ୫ ) **ଚିକିଟା** :— ବାଲିର ୯ ଗୁଣ କାଦୁଅ । ଏହା ଚାଷପକ୍ଷରେ କଷ୍ଟକର । ଏଥିରେ ଭଲ ଫସଲ ହୁଏ ନାହିଁ ।

( ୬ ) **ଟେଙ୍ଗୁଟିଆ** :— ଏଥିରେ ଶତକଡା ୫ ଭାଗ ଚୂନ ଥାଏ; ଫସଲର ସେତେ ଉପଯୋଗୀ ନୁହେଁ ।

ମାଟି ବେଶୀ ବାଲିଆ ହେଲେ ତହିଁରେ ପଶୁ ଗୋବର ଖତ ମିଶାଇଲେ କିଂବା କିଛି କାଦୁଅ ମାଟି ମିଶାଇଲେ ଭଲ ମାଟି ହୋଇ ଯାଏ । ଅଥବା ମଧ୍ୟ ବେଶୀ ଗଭୀର କରି ଚଷ ଦେଲେ ତଳ ମାଟି ଉପରକୁ ଉଠି ଆସି ଭଲ ହୋଇଯାଏ ।

ବେଶୀ କାଦୁଅ ମାଟି ହୋଇଥିଲେ ମାଣପ୍ରତି ୪୦ । ୫୦ ଗାଡ଼ି ପାଉଁଶ ମିଶାଇଦେଲେ ଭଲହୁଏ । ମାଟିଉପରେ ଶୁଖିଲା ଡାଳ-

ପତ୍ର ଜମାକରି ପୋତିଦେଲେ ପୋଡ଼ି ଖାଇ ମାଟି ଭଲ ହୋଇଯାଏ । ମାଣ ପ୍ରତି ୪୦ ।୫୦ଗାଡ଼ି ମିଶାଇଦେଲେ ମଧ୍ଯ ମାଟିର ଅବସ୍ଥା ଭଲ ଅଡ଼କୁ ଅସେ । କଳି ଚୂନ ଓ ଖଳମାଟି ମିଶାଇଲେ କାଦୁଅ ମାଟିର ଅବସ୍ଥା ବଦଳିବା ସମ୍ଭବ ।

## ଜମି ସଜାଡ଼ିବା ।

ଯେ କୌଣସି ପ୍ରକାର ମାଟି ହେଉ ନା କାହିଁକି ବିଲକିଆରିକୁ ସଜାଡ଼ି ନ ଦେଲେ ଫସଲ ଭଲ ହୁଏ ନାହିଁ । ସେ ବିଷୟରେ ଅମ୍ଭେମାନେ ବଡ଼ ଅବହେଳା କରିଥାଉଁ । ଏଥିରେ ପ୍ରଥମେ କିଛି ପଇସା ଅବଶ୍ୟକ । ତା'ପରେ ମନ ଲଗାଇ ପରିଶ୍ରମ କରିବାକୁ ହେବ । ଜମି ସଜାଡିବାକୁ ହେଲେ କେଉଁ ବିଷୟରେ ଅଧିକ ଦୃଷ୍ଟି ଦେବାକୁ ହେବ ।

୧–ଜମି ସମତଳ ହେବ–ପାଖେ ଉଚ ଓ ଅନ୍ୟ ପାଖ ଖାଲଥିଲେ ପାଣୀ ଗୋଟିଏ ପାଖକୁ ଗଡ଼ି ଅସି ଫସଲର କ୍ଷତି କରେ ।

୨–ଜମି ଗହୀରିଅ ଓ ହୁଡ଼ା ଉଚ୍ଚ ହେବା ଅବଶ୍ୟକ; ଛୋଟକରି ଜମିରେ ଚାଷ ଭଲ ହୁଏ ନାହିଁ । ହୁଡ଼ାରେ ଅନେକ ଜମି ବୃଥାଯାଏ ।

୩–କ ୪ କୋଣିଆ କିଆରି ଚାଷ ପାଇଁ ଭଲ । ଗୋଲ ବା ତିନକୋଣିଆ ( ତ୍ରିଭୂଜାକାର ) କିଆରିରେ ହଳ ବୁଲିବାର ଅସୁବିଧା ହୋଇ ଭଲ ଫସଲ ହୁଏ ନାହିଁ ।

୪–ବିଲମଧ୍ୟକୁ ପାଣୀ ଅଣିବା ଓ ଅଧିକ ପାଣୀ ହେଲେ ବାହାର କରିଦେବାର ସୁବିଧା ଥିବା ଅବଶ୍ୟକ । ବେଶୀ ବର୍ଷା ସମୟରେ କିଆରିରେ ପାଣୀ ବନ୍ଦ ହୋଇ ରହିଲେ ଫସଲ ଧଡ

ନଷ୍ଟହୋଇ ଯାଏ । ପକ୍ଷାନ୍ତରେ ପାଣୀର ଅଭାବ ସମୟରେ ଉପରୁ ପାଣୀ ଗଡ଼ି ଅସିବାର ସୁବିଧା ନଥିଲେ ବର୍ଷା ଅଭାବରେ ମରିଯାଏ । ତେବେ ଝୁବ୍ ଖାଲ ଜମି ହେଲେ ଏ ଭୟ ସେତେ ବେଶୀ ରହେ ନାହିଁ ।

୫-ବିଲମାନଙ୍କ ଉପରେ କିଂବା କେତେକ ଚକ ଜମିର ମଧ୍ୟରେ ପାଣୀ-ଭଣ୍ଡାର ରଖିବା ବିଧେୟ । ଗଡ଼ଜାତରେ ଅନେକ ସ୍ଥାନରେ ପର୍ବତର ଝର ବାହାରିଥାଏ । ଏହି ଝରର ତଳେ ଗୋଟିଏ ଯୋଡ଼ିଏ ବଡ଼ ହୁଡ଼ା ବାନ୍ଧିଦେଲେ ଉପରେ ପାଣୀ ଜମାହୋଇ ରହେ ଓ ତଳ ଜମି ଭଲ ହୁଏ ।

୬-କିଆରି ଲମ୍ବ ଓ ଓସାରରେ ଖୁବ୍ ବିସ୍ତୃତ ହେଲେ ଚାଷ, ପାଣୀ ଓ ଫସଲର ବୃଦ୍ଧି ଏ ସମସ୍ତ ପକ୍ଷରେ ସୁବିଧା ଜନକ ।

---

## ୩ୟ ଅଧ୍ୟାୟ ।

ବର୍ତ୍ତମାନ ଅମ୍ଭେମାନେ ବିବିଧ ଫସଲ ବିଷୟ ଆଲୋଚନା କରିବୁଁ । ପରମ୍ପରାକ୍ରମେ ଅର୍ଥାତ୍ ପୂର୍ବପୁରୁଷରୁ ଅମ୍ଭେମାନେ ଯେଉଁ ଫସଲଗୁଡ଼ିକ କରି ଆସୁଅଛୁଁ ତାହା ଆମ୍ଭମାନଙ୍କର ଅଭ୍ୟାସଗତ ହୋଇ ଯାଇଥିଲେ ମଧ୍ୟ ସେଥିରେ ବେଳେବେଳେ ଅନେକ ଦୋଷ ରହି ଯାଉଅଛି । ତଥାପି ସେ ସବୁ ସମ୍ବନ୍ଧରେ ଅଧିକ ଆଲୋଚନା ନକରି ଯେଉଁ ଫସଲ ଅଧିକ ଲାଭଜନକ ଏବଂ ଯାହା କରି ଅମ୍ଭେମାନେ ଉଦରପୋଷଣଭିନ୍ନ ଅନ୍ୟାନ୍ୟ ସାଂସାରିକ କାର୍ଯ୍ୟମାନ ଅବାଧରେ ସମ୍ପନ୍ନ କରିପାରିବୁଁ ତାହା ଆଲୋଚନା କରିବା ଉଚିତ । ଏଥି ସଙ୍ଗେସଙ୍ଗେ ଦେଶପ୍ରଚଳିତ ଫସଲମାନଙ୍କର ଯାହା ଉନ୍ନତି କରା ଯାଇପାରେ ତାହା ମଧ୍ୟ ଯଥାସମ୍ଭବ କହିବାକୁ ହେବ ।

ଜୀବନଧାରଣ ପାଇଁ ଏବଂ ବିଭିନ୍ନ ବ୍ୟବସାୟ ପାଇଁ ଅମ୍ଭେମାନେ ଅନେକ ପ୍ରକାର ଫସଲ କରୁଁ । ଯଥା :—

୧- ଭାତ ବା ପ୍ରଧାନ ଖାଦ୍ୟପାଇଁ— ଧାନ, ଗହମ ।
୨- ଡାଲି ଓଗେର— ମୁଗ, ବୀରି, ହରଡ଼ ଇତ୍ୟାଦି ।
୩- ପରିବାପାଇଁ— ବିବିଧ ଶାକ୍‌ସବ୍‌ଜି, ଆଳୁ, କୋବି, ମୂଳା, କଦଳୀ, ବାଇଗଣ ।
୪- ଖାଦ୍ୟ ଓ ପଶୁଖାଦ୍ୟ— କୋଲଥ, ଚଣା ।
୫- ଲୁଗାପଟା— କପା ।
୬- ଗୁଡ଼ ଓ ଚିନି— ଆଖୁ ।

୭—ବ୍ୟବସାୟ ଓ ବ୍ୟସନପାଇଁ— ଦୋକତା, ପାନ, ମସଲା ଇତ୍ୟାଦି ।

୮—ଭୋଗ ପାଇଁ—ଗୁଆ, ନଡ଼ିଆ, ଲେମ୍ବୁ, କମଳା ଇତ୍ୟାଦି ।

---

## ଧାନ ।

ଧାନ ଅମ୍ଭମାନଙ୍କର ପ୍ରଧାନ ଫସଲ । ଖାଦ୍ୟଭିତରେ ଭାତ ପ୍ରଧାନ ଏବଂ ଏହା ନହେଲେ ଲୋକେ ବଞ୍ଚିବା ଅସମ୍ଭବ; ଏଣୁ ଲୋକେ ପ୍ରଥମେ ଏହି ଜନିଷଟିପ୍ରତି ଅଧିକ ଦୃଷ୍ଟି ଦିଅନ୍ତି । ଦେବା ଉଚିତ ମଧ୍ୟ ।

ଏ ଦେଶରେ ଅତ୍ୟଧିକପରିମାଣରେ ଧାନ ଜନ୍ମେ । ଆବାଦି ଜମିମାନଙ୍କମଧ୍ୟରୁ ଶତକଡ଼ା ୯୫ ଭାଗ ଜମିରେ କେବଳ ଧାନ ଫଳେ । ଧାନଫସଲ ବହୁ କାଳରୁ ଏହି ଜମିମାନଙ୍କରେ ହୋଇ ଆସୁଅଛି । ଏଥିରେ ଅନ୍ୟାନ୍ୟ ଲାଭଜନକ ଫସଲ କରି ଯାଇପାରେ୍ନା ମାତ୍ର ଧାନ ଲୋକମାନଙ୍କର ପ୍ରଧାନ ସମ୍ବଳ । ପ୍ରାୟ ପ୍ରତ୍ୟେକେ ଧାନହିଁ କରନ୍ତି । ତେଣୁ ଏହି ଧାନର ଉନ୍ନତିକଳ୍ପେ କେତେକ କଥା କହିବା ଆବଶ୍ୟକ ।

ଆମ ରାଜ୍ୟରେ ଅନେକପ୍ରକାର ଧାନଚାଷ କରାଯାଏ । ସେମାନଙ୍କର ନାମ ସ୍ଥାନଭେଦରେ ବିଭିନ୍ନ ମାତ୍ର ସାଧାରଣ ଧାନକୁ ତିନିଭାଗରେ ବିଭକ୍ତ କରାଯାଇପାରେ:—

୧- ବିଆଳି ୨- ଶାରଦ ୩- ଡାଲୁଅ ।

# ବିଆଳୀ ଧାନ ।

ଏହି ଧାନପାଇଁ ଅଳ୍ପ ପାଣି ଆବଶ୍ୟକ ହୁଏ ବୋଲି ଏହା ଢିପ ଜମିରେ ହୁଏ । ନଈକୂଳ ବାଲିଆ ଜମି (ପାଳ)ରେ ମଧ୍ୟ ଏହା ଭଲ ହୁଏ । ଉଚ୍ଚ ଦୋରସା ମାଟି ଫସଲ ପକ୍ଷରେ ସର୍ବୋତ୍କୃଷ୍ଟ । ଖାଲୁଆ, ମଟାଳଜମି ଆଦୌ ସୁବିଧାଜନକ ନୁହେଁ । ଯେତେ ଆଗରୁ ଜମିକୁ ଚାଷ କରାଯାଇପାରେ ସେତେ ଭଲ । ମାଘ-ମାସରେ ବର୍ଷାହେଲେ ବିଆଳୀ ଜମିକୁ ଚାଷ କରିବା ଉଚିତ । ଏହା କଲେ ମାଟି ଖରା ଓ ପବନ ଖାଇ ଉର୍ବର ହୁଏ । ବାଜେ ଗଛ ଜନ୍ମି ପାରେନାହିଁ । ବିଆଳୀ ଜମିରେ ରବିଫସଲ କରାଯାଇଥିଲେ ତାହା ଉଠି ଗଲାପରେ ଭଲ କରି ଦୁଇତିନିଥର ହଳ କରିବା ଉଚିତ । ଜମି ଶକ୍ତ ଥିଲେ ବୈଶାଖ ଓ ଜ୍ୟେଷ୍ଠରେ ଭଲ ଅସରାଏ ବର୍ଷା ହେଲା-ମାତ୍ରକେ ହଳ କରିବାକୁ ହେବ । ଏହା ପରେ ବିଦା ବା ବାଖରଦ୍ୱାରା ଦୁଇଥର ଚାଷ କରି ମଇ ଓ କଣ୍ଟାମଇ ଦେଲେ ଜମି ଚଉରସ ହୋଇ ବିହନ ବୁଣିବାପାଇଁ ଉପଯୁକ୍ତ ହୁଏ ।

**ବୁଣା ଓ ବେଉଷଣ:** — ଜମି ଉତ୍ତମରୂପେ ଚାଷ ହୋଇ ଥିଲେ ବୈଶାଖ ଶେଷରେ ବା ଜ୍ୟେଷ୍ଠ ଆରମ୍ଭରେ ମାଣପ୍ରତି ୩୦ ସେର ଲମ୍ବା ଏକମହଣ ଅର୍ଥାତ୍ ପାଞ୍ଚମାଣିଆ ଗୌଣୀରେ ଏକପୌଟି ବିହନ ବୁଣିବାକୁ ହେବ । ଛନ୍ଦନ ପରେ ହଳକରି ବିହନକୁ ମାଟିରେ ମିଶାଇ ଦେଇ ମେଣ୍ ଦିଆଯାଇଥାଏ । ଲଂବା ବୁଣିବାର ଠିକ୍‌ପରେ ହାଲୁକା ଭାବରେ ମଇଦେଲେ ମଞ୍ଜି ଘୋଡାଇହୋଇଯାଏ ।

ଏହାର ପ୍ରାୟ ୧୫ଦିନପରେ ଧାନସହିତ ଜମିରେ ଥିବା ବାଲୁଙ୍ଗା ଏବଂ ବାଜେ ଗଛ ବାଛିବାକୁ ହୁଏ । ବିଯୃାଳୀ ଫସଲରେ ଏହି ବଛାକାର୍ଯ୍ୟ ବିଶେଷ କଷ୍ଟକର ଏବଂ ପରିଶ୍ରମକର କରିବାକୁ ହୁଏ । କୌଣସି କୌଣସି ସ୍ଥଳରେ ଗଛରୁ ରୁଅଁା ବାହାରିବା ସମୟରେ ମୁଣ୍ଡାଲଙ୍ଗଳଦ୍ୱାରା ଅଳ୍ପ ଚାଷକରିଯାଏ । ଏହାଦ୍ୱାରା ଗଛ ଶୀଘ୍ର ଶୀଘ୍ର ବଢିବାକୁ ଆରମ୍ଭକରେ ।

**ରୁଆ:—** ବିଯୃାଳୀ ସାଧାରଣତଃ ବୁଣାଯାଇଥାଏ । କିନ୍ତୁ ରୁଆ ଦ୍ୱାରା ଅଧିକ ଫସଲ ହୁଏ । ରୋଇବାକୁ ହେଲେ ବୈଶାଖ ଜ୍ୟେଷ୍ଠରେ ଜମିକୁ ଚାଷଦ୍ୱାରା ଠିକ୍‌କରି ତଳି ପକାଇବାକୁ ହୁଏ । ତଳପାଇଁ ମାଣ ପ୍ରତି ତିନପୌଟି ବିହନ ବୁଣାଯାଇପାରେ । ୧୦ । ୧୫ ସେର ବିହନର ଗ୍ଭରା ମାଣେ ଜମିପାଇଁ ଯଥେଷ୍ଟ ହୁଏ ।

ଏକମାସ ବା ଦେଢମାସ ମଧ୍ୟରେ ଚାରାସବୁ ୯ଇଞ୍ଚ ବା ଫୁଟେ ଉଚ୍ଚହେଲେ ରୋଇବାର ଉପଯୁକ୍ତ ହୁଏ । ତଳରେ ପାଣି ଥାଉଁ ଥାଉଁ ଉପାଡିବାର ସୁବିଧା; ମାଟି ନରମ ଥିବାରୁ ଚେର ଛିଡଯାଏ ନାହିଁ । ଚେରକୁ ଧୋଇ ଛାଇ ଜାଗାରେ ରଖିଲେ ତାହା ପାଞ୍ଚ ସାତଦିନ ରହିପାରେ । ରୋଇବା ପୂର୍ବରୁ ପତ୍ର ଅଗରୁ କାଟିଦେବା ଉଚିତ ନଚେତ୍ ଚେର ଲାଗିବା ପୂର୍ବରୁ ପତ୍ରସବୁ ନଇଁପଡ଼ି ପାଣିରେ ଲାଗି ପଚିବାକୁ ଆରମ୍ଭ କରେ । ରୋଇବା ସମୟକୁ ବିଲରେ ୨ । ୩ ଇଞ୍ଚ୍ ପାଣି ଥାଏ । ଯେଉଁ ଦିଗରୁ ବେଶୀ ପବନ ବହୁଥାଏ ତାର ବିପରୀତ ଦିଗରୁ ରୋଇବା ଦରକାର ।

ଭଲରକମ ପାଚିବା ପର୍ଯ୍ୟନ୍ତ ବିଯୃାଳୀକୁ କ୍ଷେତରେ ରଖିବା ଉଚିତ ନୁହେଁ । ରଖିଲେ ଧାନ ଝଡ଼ିପଡ଼େ ଏବଂ କଡ଼ା ଭାଙ୍ଗିପଡ଼େ ।

---

# ଶାରଦ ଧାନ ।

ଶ୍ରେଷ୍ଠ ଲଘୁ ଓ ବଡ ଲଘୁ ବୋଲି ଦୁଇ ପ୍ରକାର ଧାନ ଅଛି । ଶ୍ରେଷ୍ଠ ଲଘୁ କାର୍ତ୍ତିକ ମାର୍ଗଶିର ମାସରେ ପାଚି କାଟିବାର ଉପଯୁକ୍ତ ହୁଏ । ବଡ ଲଘୁ ପୌଷ ମାସରେ କଟାଯାଏ । ଜ୍ୟେଷ୍ଠ ମାସରେ କିମ୍ବା ଆଷାଢର ଆରମ୍ଭରେ ଏହି ଧାନ ବୁଣାଯାଏ । ଆମ ଦେଶର ଲୋକମାନେ ଏ ବିଷୟରେ ବିଶେଷ ଅଭିଜ୍ଞ ଥିବାରୁ ସେ ସମ୍ବନ୍ଧରେ ଅଧିକ କହିବା ଆବଶ୍ୟକ ବୋଧ କରୁନାହିଁ । ବଡ଼ ଲଘୁପାଇଁ ଖୁବ୍ ଭଲ ଅଟାଲ ଦୋରସମର ଜମି ଆବଶ୍ୟକ । ଏହା ବେଶୀ ପାଣି ଆବଶ୍ୟକ କରେ ଏବଂ ବହୁତ ଡେରିରେ ପାଚେ । ଏ ଧାନର ଚାଉଳ, ଚୂଡ଼ା, ଖଇ ସମସ୍ତ ଉତ୍କୃଷ୍ଟ ଧରଣର । ଖୁବ୍ ସରୁ ଧାନ ମଧ୍ୟ ହୁଏ । କେତେକ ଧାନ ଯେପରି ସରୁ ସେହିପରି ସୁଗନ୍ଧଯୁକ୍ତ । ଖାଦ୍ୟ ପକ୍ଷରେ ଏହି ଧାନ ଅନ୍ୟାନ୍ୟ ସମସ୍ତ ଧାନ ଅପେକ୍ଷା ଉତ୍କୃଷ୍ଟ ।

ଶାରଦ ଧାନ ଆମ ଦେଶରେ ଯାହା ପ୍ରଚଳିତ ତାହା ଆମ ଚଷାମାନେ ଭଲ ରକମ ଜାଣନ୍ତି । ତେଣୁ ସେ ସମ୍ପର୍କରେ ଅଧିକ କଥା ନକହି ଯେଉଁ କେତେକ ନୂତନ ଧରଣ ଧାନରୁ ଅଧିକ ଧାନ ଆମଦାନୀ କରା ଯାଉଅଛି, ସେ ସମ୍ପର୍କରେ କିଛି କୁହାଯାଇପାରେ । ଏହିପରି ଗୋଟିଏ ଧାନର ନାମ—ଦହିଆ । ଏହା ଢେଙ୍କାନାଳ ଓ ଅନ୍ୟାନ୍ୟ କେତେକ ଗଡ଼ଜାତରେ ପରୀକ୍ଷା କରା ଯାଇଅଛି । ଏପରି ପ୍ରାଇମେରି ସ୍କୁଲମାନଙ୍କରେ ଏହାର ତୁଳନାତ୍ମକ ପରୀକ୍ଷା କରାଯାଇ ଅଧିକ ଫଳିବାର ଦେଖା ଯାଇଅଛି । ଏହାକୁ କଟକ ୧, ୬, ୩, ନମ୍ବର ଧାନ ବୋଲି

ହୁଅାଂ ଯାଉଅଛୁ । ଚଷାମାନେ ଇଚ୍ଛାକଲେ ଏହି ଧାନ କରିପାରନ୍ତି ।

**କଟକ ନ ୧ ମ୍ବର ଧାନ**:—ଏହା ଲଘୁ ଶାରଦ । ଖୁବ୍ ବେଶୀ ଫଳେ । ଧାନଟି ମୋଟା ଓ ଲମ୍ବା । ଏହା କାର୍ତ୍ତିକ ମାସର ୨ୟ ସପ୍ତାହରେ ଫୁଲ ଉଡ଼ାଏ ଏବଂ ମାର୍ଗଶିର ମାସର ମଧ୍ୟଭାଗରେ ପାଚେ । ହିଙ୍କଏ ଖାଲ ଜମିରେ ହୁଏ ଏବଂ ସାଧାରଣତଃ ମାଣ ପିଛା ୮ ୪ ଭରଣ କରି ଫଳେ । ଏଥିରେ ଭଲ ଚୂଡ଼ା ହୁଏ ଓ ଖଇ ହୁଏ ।

**କଟକ ନ ୨ ମ୍ବର ଧାନ**:—ଏହା ମଧ୍ୟଭଲ ଶାରଦ ଧାନ । ନ ୧ ମ୍ବର ଧାନଠାରୁ ହପ୍ତାଏ ବିଲମ୍ବରେ କିନ୍ତୁ ସାଧାରଣ ଶାରଦ ଧାନଠାରୁ ଚଞ୍ଚଳ ହୁଏ । ଏଥିରେ ଖୁବ୍ ବେଶୀ ଫଳ ହୁଏ । ମାଣ ପିଛା ଛଅ ଭରଣ ଚାରି ପଉଟି ବା ଚାରି ଭରଣ ଧାନ ଫଳିଥାଏ । ଏହା କାର୍ତ୍ତିକର ଶେଷ ସପ୍ତାହରେ ଫୁଲ ଉଡ଼ାଇ, ମାର୍ଗଶିର ଶେଷ ସାପ୍ତାହରେ ପାଚେ । ଧାନଗୁଡ଼ିକ ମୋଟା ଓ ଗେଡ଼ା ।

**କଟକ ୩ନମ୍ବର ଧାନ**:—ଏହା ଏକପ୍ରକାର ଶାରଦଧାନ -ବିଳମ୍ବରେ ହୁଏ ଏବଂ ଏଥିରେ ଖୁବ୍ ବେଶୀ ଫଳ ହୁଏ । ମାର୍ଗଶିର-ମାସର ଶେଷ ସପ୍ତାହରେ ଫୁଲ ଉଡ଼ାଇ ପୌଷ ମାସର ଶେଷ ସପ୍ତାହରେ ପାଚେ । ଏହା ସେତେ ମୋଟା ବା ସରୁ ନୁହେଁ । କିନ୍ତୁ ବେଶ୍ ପରିଷ୍କାର ଚାଉଳ ଓ ଭାତ ହୁଏ । ସାଧାରଣତଃ ଭ୩ । ୪ ଠାରୁ ଭ୩ । ୬ପୌଟି ଯାଏ ଫଳିଥାଏ । ଏହି ଧାନରୁ ନଡ଼ା ମଧ୍ୟ ଭଲହୁଏ ।

ଶାରଦଧାନ ବୁଣା ଓ ରୁଆ ହୋଇଥାଏ । ବୁଣା ଅପେକ୍ଷା ରୁଆ ଜମିରେ ଗଛ ଖୁବ୍ ଭଲ ହୁଏ । ଫସଲ ମଧ୍ୟ ଉପଯୁକ୍ତ ପରିମାଣ ଅମଦାନି ହୁଏ । ରୁଆ ଅପେକ୍ଷା ବୁଣା ସହଜ—ଏଥିରେ ବେଉଷଣ ଅଧିକ ଆବଶ୍ୟକ । ରୋଇବାର ସୁବିଧାଥିଲେ କେତେକ ଜମି ରୋଇବାକୁ ଓ କେତେକ ବୁଣିବାକୁ ରଖିବା ଉଚିତ ।

---

# ଡ଼ାଲୁଅଧାନ ।

ଓଡ଼ିଶାରେ ଅନେକ ଜାଗାରେ ଡାଲୁଅଧାନ ହୁଏ । ଏହି କ୍ଷେତ୍ରର କେତେକ ସ୍ଥାନରେ ମଧ ଏହି ଧାନ ହୋଇଥାଏ ଏହା ବେଶୀ ପାଟ ଜମିରେ ହୁଏ କାରଣ ଏହାପାଇଁ ବେଶୀ [illegible] ଆବଶ୍ୟକ । ଅନେକ ଥର ପାଣୀ ବୁହାଇବାକୁ ହୁଏ ବୋଲି ଏଥିରେ [illegible] ଖର୍ଚ୍ଚ ହୁଏ । ଯେଉଁ ଜମିରେ ରବି ବା ବର୍ଷାକାଳୀ [illegible] ହୋଇ ପାରିବ ନାହିଁ, ସେହିଠାରେ ଚଷାମାନେ ଅ[illegible] କରନ୍ତି ।

ଡ଼ାଲୁଅ ଜମିକୁ ପାଣୀ ମଡାଇବା [illegible] ସୁବିଧା ନଥିଲେ ମଟିଖାଲରୁ ଶେଣୀ ଓ ଟେଣ୍ଡାଦ୍ୱାରା ପାଣୀ ବୁହାଇବାକୁ [illegible]ଏ ।

ଡ଼ାଲୁଅ ବିଷୟରେ ଚଷାମାନଙ୍କର [illegible]କେତେକ ଭ୍ରମ ଧାରଣା ଅଛି । ତାହାଦୂର କରିବା ଆବଶ୍ୟକ ।

(୧) ଖରାଦିନରେ ଅମଳ ହୋଇ[illegible] ଡ଼ାଲୁଅ ବିହନକୁ ବର୍ଷାଦିନରେ ବିଯାଳି କରି ନବୁଣିଲେ ଆଗାମୀ [illegible]ଥ ବୁଣାବେଳକୁ ଏଥିରୁ ଗଜା ବାହାରିବ ନାହିଁ ।

(୨) ଏକ ସ୍ଥାନରେ ବୁଣା ହେଉ[illegible] ଡ଼ାଲୁଅ ଅନ୍ୟସ୍ଥାନରେ ହେବ ନାହିଁ ।

(୩) କାଳୁଡ଼ିଅ, ବ୍ରାହ୍ମଣବାଇ ଏବଂ [illegible]ାଲୀ ପ୍ରଭୃତି କେତେକ ଧାନ କେବଳ ଡାଲୁଅ ହୋଇପାରେ (ବ[illegible] ୨ୟ ଓ ୩ୟ) । ଏହି ସବୁ ଭୁଲ୍ ଧାରଣା । ଏଥିଯୋଗୁଁ [illegible] ବିହନ ସହଜରେ ମିଳେନାହିଁ । ବଢ଼ି ହେଉଥିବା ସ୍ଥାନମା[illegible] ପାଟପରି ପାଣୀ

ଜମାହୋଇ ରହେ । ସେଠାରେ ଡାଲୁଅ କରି ଚଷା ଲାଭ ପାଇପାରେ ।

କଟକଫାରମର ଡେପୁଟିଡାଇରେକ୍ଟରଙ୍କ ନିକଟକୁ ଲେଖିଲେ ସେ ଅବଶ୍ୟକ ପରିମାଣ ଡାଲୁଅର ବିହନ ଯୋଗାଇ ଦେଇ ପାରିବେ ।

ଡାଲୁଅଧାନ ବିଆଳୀରୂପେ ବୁଣା ନହେଲେ ଅନ୍ୟ ଥରକୁ ଗଜା ହେବାର ଯେ ଅସୁବିଧା ହେବ ବୋଲି କହନ୍ତି ତାହାମଧରେ କେତେକ ସତ୍ୟ ଅଛି । କାରଣ ଚଉର୍ମାସିଆ ପାଗରେ ଧାନବିହନ ଘରେ ରହିଲେ ତାହାର ଗଜାହେବା ଶକ୍ତି ଅନେକ କମିଯାଏ; ଏବଂ ପୌଷମାସରେ ବୁଣିବା ବେଳକୁ ଗଜା ଭଲ ହୁଏନାହିଁ ।

ମାଲ୍‌ଘଣ୍ଟା ଓ ଦହିଆଧାନ କଟକ କୃଷିଫାର୍ମରୁ ଆଣିଲେ ଡାଲୁଅପାଇଁ ଭଲ । କାରଣ ଏହା ଲଘୁଧାନ; କାର୍ତ୍ତିକ ମାର୍ଗଶୀରରେ କଟାହୁଏ । ଏହା କଟକ ୧ନମ୍ବର ଧାନ । ଏହାର ଫଳ ଭଲ ହୁଏ । ଚାଉଳ ସଫାସୁତୁରା, ମୋଟା ଓ ନାଲି ।

---

# ଆଖୁ ।

ଧାନଫସଲ ଛାଡ଼ିଦେଲେ ଓଡ଼ିଶାରେ ଆଖୁ ସବୁଠାରୁ ଅଧିକ ଲାଭଜନକ ଫସଲ । ଭଲ ରକମ ଆଖୁ କରି ପାରିଲେ ଏବଂ ଉପଯୁକ୍ତ ପ୍ରଣାଳୀରେ ଗୁଡ଼ ଅମଦାନି କରି ଜାଣିଲେ, ଏହି ଆଖୁଫସଲ କରି ଚଷା ତା'ର ବାର୍ଷିକ ସବୁ ପ୍ରକାର ବାଜେ ଖର୍ଚ୍ଚ ଓ ଖଜଣା ଚଳାଇ ଦେଇ ପାରେ । ମାତ୍ର ଏହି ଫସଲ କରିବା ଚଷାର ଶାରୀରିକ ପରିଶ୍ରମ ଓ ପଇସାଖର୍ଚ୍ଚ ମଧ୍ୟ କମ୍ ହୁଏନାହିଁ । ଏହି ସବୁ ଖର୍ଚ୍ଚ ତୁଳନାରେ ତା'ର ଅମଦାନି ଯଦି ଅଧିକ ନହୁଏ ତେବେ ଏହା କରିବାର ଲାଭ ନାହିଁ । ଏଣୁ ଏହି ଫସଲ କଥା ଭଲ ରକମ ଆଲୋଚନା କରିବା ଆବଶ୍ୟକ ।

ଓଡ଼ିଶାରେ ସାଧାରଣତଃ କାଳି, କନ୍ତାରି, ରୁପ, ଖରି, ବୋମ୍ବେଇ ଏବଂ ମୁଙ୍ଗୋଜାତୀୟ ଆଖୁ ଜନ୍ମେ । ଏଥିମଧ୍ୟରୁ ଶେଷ ତିନିପ୍ରକାର ଆଖୁ କୃଷିବିଭାଗଦ୍ୱାରା ମଧ୍ୟ ଆମଦାନି କରା ହୋଇଥିଲା । ଗତ କେତେକ ବର୍ଷମଧ୍ୟରେ ଓଡ଼ିଶାରେ ଏବଂ ଏହି ପ୍ରଦେଶର ଅନ୍ୟାନ୍ୟ ଅଂଶରେ 'କୋ' ନ୨୧୩ମ୍ବର ନାମକ ନୂତନ ପ୍ରକାର ଆଖୁ ଉଲ୍ଲିଖିତ ଯେ କୌଣସି ପ୍ରକାରର ଆଖୁ ଅପେକ୍ଷା ଉତ୍କୃଷ୍ଟ ଥିବାର ପରୀକ୍ଷାଦ୍ୱାରା ଦେଖା ଯାଇଅଛି । ଏହା ମଧ୍ୟଭଲ ମୋଟା ଆଖୁ ଏବଂ ଅନ୍ୟାନ୍ୟ ପ୍ରକାର ଆଖୁ ଅପେକ୍ଷା ଏହା ପାଣିଅଭାବରେ ଅନେକଦିନ ବଞ୍ଚି ରହିପାରେ ଏବଂ ପ୍ରତି ଏକରରୁ ଅନ୍ୟାନ୍ୟ ଆଖୁ ତୁଳନାରେ ଏଥିରୁ ଅଧିକ ଗୁଡ଼ ମିଳେ । ଏହାର ଚୋପା ସାଧାରଣତଃ କଠିନ ଥିବାରୁ ବିଲୁଆମାନେ ଏହାର କ୍ଷତି କରିପାରନ୍ତି ନାହିଁ ଏବଂ ଅନ୍ୟାନ୍ୟ ପ୍ରକାରର ଆଖୁ

ଦେହରେ ଯେପରି ସହଜରେ ରୋଗ ହୁଏ ଏହା ଦେହରେ ସେପରି ହୁଏନାହିଁ ।

**ଚୃଷ:**—ଏହି ଆଖୁର ଚୃଷ ସକାଶେ ବିଶେଷରୂପେ ମନେରଖିବା ଉଚିତ ଯେ ଭଲରୂପେ ବଢ଼ିବାଲାଗି ଏହାକୁ ଡ଼ିପ ଜମିରେ ଲଗାଇବା ଅବଶ୍ୟକ । ଯେପରି କି ଏହି ଜମିରେ ବର୍ଷାଦିନରେ ପାଣୀ ଜମା ହୋଇ ରହି ପାରିବ ନାହିଁ ଏବଂ ସହଜରେ ପାଣୀ ନିଗିଡ଼ି ଯାଇ ପାରିବ । ଉପର ମାଟିକୁ ୬ଇଞ୍ଚ ଠାରୁ ୮ଇଞ୍ଚ ପର୍ଯ୍ୟନ୍ତ ଗହିରାରେ ଗୁଣ୍ଡା କରିବା ଲାଗି ନିର୍ଦ୍ଦିଷ୍ଟ ଜମିକୁ ଯେତେଥର ଦରକାର ତେତେଥର ସିଧା ଏବଂ ଅଡ଼ା ବାଗରେ ହଳକରିବାକୁ ହେବ । ଓଡ଼ିଶାରେ ସାଧାରଣତଃ ମାଘମାସ ଶେଷ ବା ଫଗୁଣମାସ ଆରମ୍ଭରେ ଆଖୁ ଲଗାଯାଏ । ତେଣୁ ମାର୍ଗଶିରମାସ ଶେଷ ବା ପୌଷମାସ ଆରମ୍ଭରେ ଅର୍ଥାତ୍ ଲଗାଇବା ସମୟର ଖୁବ୍ ଆଗରୁ ଜମିକୁ ଚୃଷ କରିବାକୁ ହେବ । ଫସଲରେ ଖତ ଦେବା କୃଷକମାନେ ସାଧାରଣତଃ ଅବହେଳା କରନ୍ତି । ଏ ମନ୍ଦଅଭ୍ୟାସ ଦୂର କରିବାକୁ ହେବ । ଜମିକୁ ପ୍ରସ୍ତୁତ କରିବାବେଳେ ହଳ କରିବା ଆଗରୁ ପ୍ରତି ଏକର ଜମିରେ ୨୦ ଗାଡ଼ିରୁ ୩୦ ଗାଡ଼ି ବା ୨୦୦ମହଣ ପର୍ଯ୍ୟନ୍ତ ଗୋବର ପକାଇବାକୁ ହେବ । ତପୂରେ ହଳକରି ଏହି ଖତକୁ ମାଟି ସଙ୍ଗେ ଭଲରୂପେ ମିଶାଇ ଦେବାକୁ ହେବ ଏବଂ ତପୂରେ ମାଟି ଉପରେ ମଇ ଚଲାଇ ମାଟିକୁ ସମଭୂଲ କରିବାକୁ ହେବ । ଆଖୁଲଗାଇବା ପୂର୍ବରୁ ଅନ୍ତତଃ ହଳ ଓ ମଇ ହୋଇ ଅଠଥର ଦିଆଯିବ । ତହିଁରୁ ଅଧିକ ହେଲେ ଆହୁରି ଭଲ । ମାଟି ଗୁଣ୍ଡା ହେଲେ ଆଖୁ ଖୁବ୍ ଭଲ ହୁଏ ।

**ଆଖୁ ଲଗାଇବା:**—ଓଡ଼ିଶାରେ ସାଧାରଣତଃ ମାଘମାସ ଶେଷ କିମ୍ବା ଫଗୁଣମାସ ଆରମ୍ଭରେ ଆଖୁ ଲଗାଯାଏ । କିନ୍ତୁ ମାଘମାସ ଶେଷରେ

ଯେପରି ଏହା ଲଗାନ୍ତୁ ଏ ସେଥିଲାଗି ବିଶେଷ ଚେଷ୍ଟା କରିବା ଦରକାର । ଲଗାଇବା ସମୟରେ ମାଟି ଓଦା ଥିବା ଆବଶ୍ୟକ । ମୂଷାମାଟିପରି ସାମାନ୍ୟ ବତର ମାଟିରେ ଥିଲାବେଳେ ଅଖୁ ଲଗାଇବାକୁ ହେବ । ତାହାହେଲେ ଭଲରୂପେ ଗଛ ବାହାରି ପାରିବ । ଜମି ଶୁଖିଲା ହେଲେ ଅଖୁ ଲଗାଇବା ପୂର୍ବରୁ ତହିଁରେ ପାଣି ମଡ଼ାଇବାର ସୁବିଧା କରିବା-ପାଇଁ ଏବଂ ପାଗ ଥାଉଁ ଥାଉଁ ମାଟିକୁ ଦୋରସ୍ତ କରିବା ଲାଗି ତହିଁରେ ସିଧା ଏବଂ ଅଡ଼ ବାଗରେ ହଳ ବୁଲାଇବାକୁ ହେବ । ଦେଶୀ ହଳରେ ପ୍ରତି ୩ ଫୁଟ ଛଡ଼ାରେ ସିଅର କାଟିବାକୁ ହେବ । ଜମି ଯେଉଁ ଅଡକୁ ଢ଼ାଲୁ ସେହି ଅଡ଼କୁ ଏମାନଙ୍କ ମୁହଁ ହେବା ଦରକାର ।

**ଆଖୁମଞ୍ଜି**:—ଅଖୁଗଛର ଅଗ୍ରଭାଗ ମଞ୍ଜିପାଇଁ ଭଲ । ଏହା ଷାଣୀଚିଆ ଥିବାରୁ ବେଶୀ ପାଣି ବାହାରେ । ଗୁଡ଼ ଭଲ ହୁଏ ନାହିଁ । ମାତ୍ର ଏହା ମଞ୍ଜି ପକ୍ଷରେ ଉତ୍କୃଷ୍ଟ । ଡଠକା ମଞ୍ଜି ଭଲ । ଡଠକା ଲାଗିଲେ ଗଛ ଭଲ ହୁଏ ।

ଅଖୁର ଆଖି ନଖୁଣ ଥିବ । ଶରବନ୍ଧା ହୋଇ ନଥିବ । ୩ଗଣ୍ଠିରେ କାଟିବାକୁ ହେବ । ଜମି ପାଗ ନହୋଇଥିଲେ ମଞ୍ଜି ଲୁମ୍ବାଇବାକୁ ହୁଏ ।

**ତା'ର ପ୍ରଣାଳୀ**:—ଡେଇରି ଜମିରେ ଗୋଟିଏ ଗାତ କରି ତଳେ କୁଟା ଦେଇ ଅଖୁମଞ୍ଜି ରଖିବ । ତା ଉପରେ କଞ୍ଚା ଗୋବରପାଣୀ ଦେଇ ଓଦା ରଖିବ । ଜମି ପାଗ ହେଲେ ଏ ମଞ୍ଜିକୁ ନେଇ ଲଗାଇବାକୁ ହେବ ।

ମଞ୍ଜି ଅଖୁକୁ ଏପରି ଖଣ୍ଡଖଣ୍ଡ କରି କାଟିବ ଯେପରିକି ପ୍ରତ୍ୟେକ ଖଣ୍ଡରେ ୩ଗୋଟି ଲେଖାଏଁ ଆଖିଥିବ । ଲଗାଯିବା ପରେ ହୁଇ ଯେପରି ନଲାଗନ୍ତି ସେଥିଲାଗି ମଞ୍ଜିର ଦୁଇଭାଗକୁ ଅଲକାତରାରେ

ବୁଡ଼ାଇବାକୁ ହେବ । ତପୂରେ ସେଗୁଡ଼ିକୁ ସିଆରରେ ୨ଇଞ୍ଚ ଗଭୀରରେ ଲଗାଇବାକୁ ହେବ ଯେ ପରସ୍ପର ନିକଟରେ ଲାଗିଥିବା ଦୁଇଖଣ୍ଡି ମଞ୍ଜି ମଧ୍ୟରେ ୨ । ୩ଇଞ୍ଚ ଛଡ଼ାରେ ଜାଗା ରହିବ । ତପୂରେ ସେମାନଙ୍କୁ ଗୋଡ଼ରେ ମାଡ଼ି ମାଟି ଉପରକୁ ଚପାଇ ଦେବାକୁ ହେବ । ଦେଶୀୟ ଖଣ୍ଡରେ ଅନୁମିତରୂପେ ଲଗାଲଗି କରି ଯେପରି ଆଖୁ ଲଗାଯାଏ ତାହା ଅପେକ୍ଷା ଉପରେ ଯେପରି ଲଗାଇବାକୁ ପରାମର୍ଶ ଦିଆଗଲା ଖୁବ୍ ଭଲ । କାରଣ ଏପରି ଭାବରେ ଲଗାଇଲେ ଅଳ୍ପ ମଞ୍ଜି ଦରକାର ହୁଏ, ଏବଂ ପାଣୀ ଦେଲାବେଳେ ଅଳ୍ପ ପାଣୀ ଦରକାର ହୁଏ । ଏହାଛଡ଼ା ସିଆରଗୁଡ଼ିକ ମଧ୍ୟରେ କୋଡ଼ିବାଲାଗି ବିଶେଷ ସୁବିଧା ହୁଏ । ଧାଡ଼ିରେ ଆଖୁ ଲଗାଇବା ପୂର୍ବରୁ କିଛି ସାର ଦେଲେ ଗଜା ମୋଟା ଓ ସବଳ ହୁଏ । ସବଳ ଗଜାକୁ ପୋକ କାଟି ପାରେନାହିଁ । ସିଆରରେ ମଞ୍ଜିକୁ ମଞ୍ଜି ଲଗାଇ ପୋତିବାକୁ ହେବ,ଆଖିଯାକ କରିକୁ ରହିବା ଅବଶ୍ୟକ ।

ପୋତିବା ପରେ ଆଖୁ ଉପରେ ୪ । ୫ଇଞ୍ଚ ଗୁଣ୍ଡମାଟି ଦେବାକୁ ହେବ । ଚେକା ରଖିବ ନାହିଁ ।

ଏପରି ଭାବରେ ପୋତିଲେ ଓ ମାଟି ବତର ଥିଲେ ମାସକ ମଧ୍ୟରେ ଗଛ ଉଠିଯାଏ । କେଉଁଠି ଗଛ ନଉଠିଲେ ମାଟିର ବତର ଦୋଷ କିମ୍ବା ମଞ୍ଜିଦୋଷ ବୋଲି ବୁଝିବାକୁ ହେବ । ବତର ନଥିଲେ ପାଣୀ ମଡ଼ାଇ ଦେବାକୁ ହେବ । ମଞ୍ଜିଦୋଷ ବୋଲି ଜାଣିଲେ ଅନ୍ୟ ମଞ୍ଜି ପୋତି ଦିଆଯିବ ।

ଗଛ ଦୁଇଫୁଟ ଉଚ୍ଚ ହେଲେ ଗଜା ପିଡ଼ିଆ ଦିଆଯାଏ । ଗଛ ମୂଳରୁ ମାଟି ଆଡ଼େଇ ଦେଇ ପିଡ଼ିଆ କିଛି ଦେଇ ମାଟିରେ ଘୋଡ଼ାଇ ଦେବ । ଏହାପରେ ଥରେ ପାଣୀଦେଲେ ଗଛ ଭଲ ବଢିବ ।

ପାଗ ଦେଖି କୋଡ଼ିବା ଓ ପାଣୀଦେବାକାର୍ଯ୍ୟ କଥୁମିତ-

ଭାଂରେ ଗୃଳୁଥିବ । ଅଷାଢ଼ମାସ ପୂର୍ବରୁ ଭଲରୂପେ ପିଡ଼ଆ ଦେଇ ଗଛମୂଳ ମାଟି ଖୁବ୍ ଉଚ୍ଚ କରିଦେବ । ଅଖୁର ମୂଳ ମାଟିରେ ଘୋଡ଼ାଇ ହେଲେ ଗଣ୍ଠିରୁ ଗଜା ବାହାରି ମୂଳ ମୋଟ ଓ ଶକ୍ତ ହୁଏ । ଏଣୁ ଗଛ ବଢ଼ିବାରେ ସାହାଯ୍ୟ କରେ ।

ଅଳ୍ପ ପାଣି ଦିଅ ପଛକେ ବେଶୀ କୋଡ଼ ଦେଲେ ଅଖୁ ଭଲ ହୁଏ । ପାଣିଅଭାବ ସ୍ଥାନରେ ବେଶୀ କୋଡ଼ ଦେବା ଉଚିତ ।

**ଜମି**:—ନୀଚ ଜମିରେ ଅଖୁ କଲେ ଉଇର ଭୟ ନଥାଏ । ତାଙ୍କ ବାଧା ହୁଏ ନାହିଁ । ବୈଶାଖ ମାସରେ ପତ୍ର ଜଳଯାଏ ପଛକେ ଗଛର କ୍ଷତି ହୁଏ ନାହିଁ । ନୀଚ ଜମିର ମାଟି ମଟାଳ ହେଲେ ତହିଁରେ ମୋଟ ଅଖୁ ଲଗାଇବା ଉଚିତ । ଉଚ୍ଚ ଜମି ଯଦି ବାଲିମିଶା ହୋଇଥାଏ ସେଥିରେ ସରୁ ଅଖୁ ଭଲ ହେବ । ମଟାଳମାଟିରେ କ୍ଷାରଅଂଶ ଥିବାରୁ ସରୁଅଖୁ ଭଲ ହୁଏନାହିଁ ।

**କୋଡିବା ଏବଂ ପାଣିଦେବା** :—ମାଘମାସ ଶେଷରେ 'କୋ' ନ୨୧୩ ମ୍ବର ଅଖୁ ଲଗାଗଲେ ୩ । ୪ ସପ୍ତାହ ମଧ୍ୟରେ ଗଜା ବାହାରେ; ଗଜାଗୁଡ଼ିକ ଯାଡ଼ିଯାଡ଼ି ହୋଇ ବାହାରି ପଡ଼ାକୁ ଦେଖାଗଲେ ବାହାରର ଗୋଟିଏ ଦୋଳନ୍ତିଆ ଖୁରୁସାଇ ବା ଲଙ୍ଗଳରେ ଥରେ କୋଡ଼ ଦେବାକୁ ହେବ । କୋଦାଲସାହାଯ୍ୟରେ ଏହି କାର୍ଯ୍ୟ ଭଲରୂପେ କରି ଯାଇପାରେ । କିନ୍ତୁ ପରୀକ୍ଷାକରି ଦେଖାଯାଇଛି ଯେ ବାହାରର ଖୁରୁସାଇ ବା ଲଙ୍ଗଳରେ କୋଡଲେ ଯେତେ ଖର୍ଚ୍ଚ ହେବ, କୋଦାଲରେ କୋଡ଼ିଲେ ତହିଁର ୪ । ୫ ଗୁଣ ଖର୍ଚ୍ଚ ହେବ । କୋଡବାଦ୍ୱାରା ତଳମାଟି ଓଦାଳିଆ ରହେ ଏବଂ ଉପରମାଟି କୋଡବାଦ୍ୱାରା ନରମ ହୁଏ । ଏହା ଗଛମୂଳର ଗୋଟିଏ ଆବରଣ ସ୍ୱରୂପ ଯେଉଁ ସବୁ ଗଛ ଜନ୍ମି ଅଖୁଗଛ ପାଇଁ ମାଟିରେ ସଞ୍ଚିତ ଥିବା ଖାଦ୍ୟକୁ ଖାଇ

ଯାହେ ସେମାନଙ୍କୁ ବିନାଶ କରେ । ପ୍ରତିଥର ପାଣି ମଡ଼ାଇବା ପରେ କିମ୍ବା ଗ୍ରୀଷ୍ମକାଳର ପ୍ରବଳ ବର୍ଷାପରେ ଉପର ମାଟିକୁ ଗୁଣ୍ଡା କରିବା ଏବଂ ତଳ ମାଟିକୁ ଓଦା ରଖିବା ଲାଗି ଥରେ ଲେଖାଏଁ ଆଖୁକୁ କୋଡ଼ଦେବା ଦରକାର । ଆଖୁ ଲଗାଇଲା ବେଳେ ମାଟି ଖୁବ୍ ଓଦା ଥିଲେ, ପ୍ରାୟ ୬ସପ୍ତାହ ପରେ ଛୋଟ ଗଛମାନଙ୍କରେ ପ୍ରଥମଥର ପାଣି ଦେବା ଦରକାର ହେବ ଏବଂ ତାହା ପରେ ବର୍ଷାକାଳ ଆସିବା ପୂର୍ବରୁ ସାଧାରଣତଃ ଆଉ ୨ ବା ୩ ଥର ପାଣି ମଡ଼ାଇବାକୁ ପଡ଼ିବ । ଯେତେଥର ଦରକାର ତାହା ଅପେକ୍ଷା ବେଶୀଥର ପାଣି ଦେବା ଉଚିତ ନୁହେଁ । ଯେଉଁ ଅଞ୍ଚଳେ ନାଳ ଅଛି ସେଅଞ୍ଚଳେ ସାଧାରଣତଃ ଯେପରି ଆଖୁକିଆରୀକୁ ପାଣିରେ ବୁଡ଼ାଇ ଦିଅନ୍ତି ସେପରି ନକରି କିଆରୀର ଶେଷମୁଣ୍ଡରୁ ଗୋଟିଏ ମାହାଳି ସାହାଯ୍ୟରେ ପାଣିନେଇ ଗୋଟିକ ପରେ ଆଉ ଗୋଟିଏ ସିଆର ମଧ୍ୟକୁ ପାଣି ଛାଡ଼ି କିଆରୀଯାକ ପାଣି ମଡାଇଲେ ଭଲ ହେବ । ପ୍ରତିଥର ପାଣି ଦେବାପରେ ଉପର ମାଟିରେ ବସିଯାଇଥିବା ଅଂଶକୁ ବିହାରର ଖୁରୁପାଇ ବା ଲଙ୍ଗଳ ସାହାଯ୍ୟରେ ଭାଙ୍ଗି ଦେବାକୁ ହେବ ।

**ଖତ ଦେବା** :— ଜମି ପ୍ରସ୍ତୁତ କଲାବେଳେ ଉପରେ କୁହାଯାଇ ଥିବା ପ୍ରକାରେ ଆଖୁ ଜମିରେ ୨୦।୩୦ ଗାଡ଼ି ଖତ ପକାଇବାକୁ ହେବ; କିନ୍ତୁ ଏଥିରେ ସର୍ବଦା ହେଳା କରି ଯାଇଥାଏ । କେବଳ କେତେକ ଖାତ ଗ୍ରାମ୍ୟପାଉଁଶ ନେଇ ଜମିରେ ଛାଳଦେଇ ଆସନ୍ତି; କିନ୍ତୁ ଆଖୁ ଗୋଟିଏ କ୍ଷୟକାରୀ ଫସଲ । ପ୍ରତି ଏକରରୁ ୬୦୦ , ୮୦୦ ମହଣ ଆଖୁ ଜନ୍ମୁ ଥିବାରୁ ତହିଁରେ ଖୁବ୍ ବେଶୀ ପରିମାଣରେ ଖତ ଦେବା ନିତାନ୍ତ ଦରକାର । ସାଧାରଣତଃ ଏକରପ୍ରତି ନିହାତି କମ୍ ୨୦୦ ମହଣ ଖତ ଦେବା ଅବଶ୍ୟକ । ଭଲ ପଚିଯାଇଥିବା ଗୋବର

କ ମିଳିଲେ ଜମିପ୍ରସ୍ତୁତ କରିବା ସମୟରେ ପ୍ରତି ଏକରରୁ ଅଖୁ ଲଗାଯିବାର ଖୁବ୍ ଆଗରୁ ୫ମହଣ ପିଡ଼ିଆ ଦେବା ଦରକାର । ତାହା-ହେଲେ ଶ୍ରେଷ୍ଠ ଗୁଡ଼ିସବୁ ଯେତେବେଳେ ବଢ଼ିବେ ସେତେବେଳେ ସେଥିରେ ଥିବା ଖାଦ୍ୟ ପାଇ ପାରିବେ । ଆଉ ଏକ ପ୍ରକାର କଞ୍ଚା ଉଦ୍ଭିଦ-ଖତ ଅଳ୍ପ ଖର୍ଚ୍ଚରେ ଦିଆ ଯାଇପାରେ । ପୂର୍ବବର୍ତ୍ତୀ ବର୍ଷାକାଳ ଆରମ୍ଭରେ ପ୍ରତି ଏକରରେ ୧୫ସେର ହିସାବରେ ଧଣ୍ଡେ ଗୁମଞ୍ଜି ଜମିରେ ବୁଣିବାକୁ ହେବ । ଶ୍ରାବଣ ଶେଷରେ ଗଛଗୁଡ଼ିକ ୧୬ ଠାରୁ ୧୮ ଇଞ୍ଚ ଉଚ୍ଚ ହୋଇଥିବା ବେଳେ ସେଗୁଡ଼ିକୁ ତଆଳିରେ ହଳକରି ଦେବାକୁ ହେବ । ବର୍ଷାରେ ସେ ସବୁ ସଡ଼ିଗଲେ ମାଟିସଙ୍ଗରେ ଉଦ୍ଭିଦ ପଦାର୍ଥ ମିଶିଯିବ । ତାହାହେଲେ ମାଟିଟା ବେଶ୍ ଭଲହେବ; ଏବଂ ତହିଁରେ ବେଶୀ ସମୟ ପର୍ଯ୍ୟନ୍ତ ପାଗ ରହିବ । ଖୁବ୍ ବେଶୀ ପରିମାଣରେ ଅଖୁ ଓ ଗୁଡ଼ ପାଇବା ଲାଗି ଉଦ୍ଭିଦଖତ ସହିତ ଆମୋନିୟମ୍ ସାଲଫେଟ୍ ମିଶାଇ ଦେବାକୁ ହେବ । ଓଡ଼ିଶାରେ ସର୍କାରିଫାରମରେ ପରୀକ୍ଷା କରି ଦେଖାଯାଇ ଅଛି ଯେ ପ୍ରତି ଏକରରେ ଚାରି ମହଣକରି ଆମୋନିୟମ ସାଲଫେଟ୍ ଦିଆଗଲେ ଭଲ ଅଖୁ ଜନ୍ମେ । ଏହାକୁ ପ୍ରତିଥର ୨ମହଣ କରି ଦୁଇଥର ଦେବାକୁ ହେବ । ଅଖୁର ଧାଡ଼ିଗୁଡ଼ିକର ମଧ୍ୟବର୍ତ୍ତୀ ସିଆରରେ ଏହାକୁ ସିଞ୍ଚଦେଇ କୋଦାଳରେ ଗଛମୂଳକୁ ଅଳ୍ପଅଳ୍ପ ହୁଡ଼ାଟେକି ଦେବାକୁ ହେବ । ଏହାର ପ୍ରାୟ ମାସକ ବାଦେ ଯେତେବେଳେ ଶେଷଥର ହୁଡ଼ା ଦିଆଯିବ ସେତେବେଳେ ଆଉଥରେ ଦିଆଯିବ । ହୁଡ଼ା ଦିଆଯିବା ନିତାନ୍ତ ଦରକାର । କାରଣ (୧) ବର୍ଷାକାଳରେ ବର୍ଷାପାଣି ଶୀଘ୍ର ବାହାରି ଯିବ , ଏହି ଅଭିପ୍ରାୟରେ ବର୍ଷାକାଳରେ ସିଆରଗୁଡ଼ିକର ତଳ ମୁଣ୍ଡକୁ ଖୋଲି ଦିଆଯିବ । ଗଛମୂଳେ ପାଣି ଜମି ରହିବା ଉଚିତ ନୁହେଁ । ତାହାହେଲେ ଗଛ ଖରାପ ହୁଏ , ରଙ୍ଗ ଓ ଜଉରୋଗ ଲାଗି ନଷ୍ଟ କରନ୍ତି । ଏଣୁ ବର୍ଷାପାଣି ବାହାରି ଯିବା ଆବଶ୍ୟକ ।

(୬) ଅଖୁଗଛଗୁଡ଼ିକ ମାଟିରେ ଶୋଇ ନପଡ଼ି ଦୃଢଭାବରେ ଠିଆ-ହୋଇ ରହିବ । ବହିବା ବର୍ଷାପାଣୀ ନବର୍ଦ୍ଧ୍ନରେ ବାହାର ଯିବା ପାଇଁ ବର୍ଷାକାଳ ଆରମ୍ଭରେ ସିଆରମାନଙ୍କରେ ଥିବା ଘାସପ୍ରଭୃତିକୁ ଉପାଡି ପରିଷ୍କାର କରିବା ଉଚିତ । ବର୍ଷାପାଣୀ ଯେପରି କୌଣସି ପ୍ରକାରେ କିଆରୀ ମଧ୍ୟରେ ଜମା ହୋଇ ନରହେ । ଏହା ପରେ ପୌଷ ମାସରେ ଅଖୁ କଟାଯିବା ପର୍ଯ୍ୟନ୍ତ କିଆରୀରେ ଅଉ କିଛି କରିବା ଦରକାର ହୁଏ ନାହିଁ । ଅଖୁଗଛ ଯେପରି ତଳେ ପଡି ନ ଯାଏ ସେ ବିଷୟରେ ବିଶେଷ ସାବଧାନ ହେବା ଆବଶ୍ୟକ । ତଳେ ପଡ଼ି ଗଲେ ଅଖୁର ଗଣ୍ଠି ବାହାରି ରସ ଶୋଷିନିଏ ଓ ଅଖୁରୁ ଗୁଡ଼ ଭଲ ହୁଏ ନାହିଁ । ପବନ ଓ ଝଡ ହେଲେ ଅଖୁଗଛ ବଙ୍କା ହୋଇ ଯାଏ ଓ ତଳେ ପଡ଼ିଯାଏ । ଦୁଇଧାଡ଼ିର ଦୁଇଟିଗଛକୁ ଏକତ୍ର ପତ୍ରଦ୍ୱାରା ବାନ୍ଧିଦେଲେ ଗଛ ନଇଁପଡେ ନାହିଁ କିଂବା ତଳେ ପଡ଼ିଯାଏ ନାହିଁ । ଆମ୍ଭର ଜଙ୍ଗଲ ଅଞ୍ଚଳରେ ତରୁଆ ମିଳୁଥିବାରୁ ତରୁଆ ପୋତି ବାନ୍ଧି ଦେବା ଆହୁରି ନିରାପଦ । ଗଛ ଦଣ୍ଡମୂଳ ଉଚ୍ଚରୁ ବଳଥାଏ । ଏପରି ସ୍ଥଳେ ବାନ୍ଧିବାରେ ହେଳାକଲେ ବଙ୍କାହୋଇ ଖଣ୍ଡି ହୋଇଥାଏ ।

**ଆମଦାନୀ:**—ଲଗାଇବାର ବରଷକପରେ ଅଖୁଗଛ ପୋଖତ ହୋଇ ପେଡ଼ିବାର ଉପଯୋଗୀ ହୁଏ । ଯେଉଁ ଗଛ ଆଗେ ଲାଗିଥିବ, ସେ ତେଣିଆଗରୁ ଠିକ୍ହେବ । ମଞ୍ଜ ପକାଇବା ବନ୍ଦହେଲେ ଓ ଉପର ପତ୍ର ବିରୂପ ଦଶିଲେ ଗଛ ଠିକ୍ ହେଲା ବୋଲି ଜଣାଯାଏ ।

ଗଛ ବିକ୍ରି କଲେ ଲାଭହୁଏ ମାତ୍ର ଆମ ଏ ଅଞ୍ଚଳରେ ପ୍ରାୟ ଗଛ ବିକ୍ରି ହୁଏନାହିଁ । ଏଣୁ ପେଡିବାର ଆବଶ୍ୟକତା ହୁଏ । ଭଲଅଖୁ ହୋଇଥିଲେ ଗୁଡ଼ର ମୋଟାଏ ସାଧାରଣ ହିସାବ ମନେ ରଖିବା ଉଚିତ୍ । ଯଥା:—୧୦୦ ସେର ଅଖୁ —୬୦ । ୬୦ ସେର ହୋରୁଅ । ଗୁଡ଼

୧୫ । ୧୬ ସେର ।

ଗୋଲ ତାହୁଆରେ ଅଳ୍ପ ଜାଳ ଦେଇ ଦୋହୁଅ ଗ୍ରହଣଲେ ଗୁଡ଼ରୁ ମଳ କରରେ ଲାଗିଯାଏ । ଏହାକୁ ଛାଲଚଟୁରେ ବାହାର କରଦେଲେ ଗୁଡ଼ ଖୁବ୍ ପରିଷ୍କାର ହୁଏ । ଏପରି ପରିଷ୍କାର ଗୁଡ଼ କନ୍ଦପରି ହୋଇଥାଏ । ଏଣୁ ମାଣମୁଣ୍ଡେ ଚଷା ପ୍ରାପ୍ୟ ଏକହଜାର ଟଙ୍କା ପାଇପାରେ । ଅଳ୍ପ ଜାଳ ଦେଇ ବଡ଼ ଫୁଟ ହେଲାବେଳେ କଷ୍ଟି ସୋଡ଼ା ବା ଘୀର ଦେଲେ ସବୁ ମଳ ବାହାରି ଯାଏ । ସରୁ ଫୁଟ ହେଲା-ବେଳେ ଗୁଡ଼ ପାଗ ହେଲାବୋଲି ଜାଣିବ । ପାଣିରେ ଟିକିଏ ପକାଇ ଦେଲେ ତଳେ ଗୁଡ଼ପରି ଦେଖାଯାଏ । ପାଣିହାତ କରି ଦୁଇ ଅଙ୍ଗୁଳିରେ ଧରିଲେ ତାରପରି ଲମ୍ବିଯାଏ ; ଗୁଡ଼ାକୁ ଟେକିଲେ ଖଣ୍ଡ ଖଣ୍ଡ ଛିଡ଼ିପଡ଼େ; ତେବେ ଠିକ୍ ଗୁଡ଼ ହେଲା ବୋଲି ଜାଣିବ । ମାଠିଆରେ ସାଇତି ରଖିଲେ ବିକିବାର ଉପଯୋଗୀ ହୁଏ । ସେରକରୁ ଏକ ଛଟାଙ୍କି ମଳ ବାହାରି ଗଲେ ଗୁଡ଼ ଚିନିପରି ଦେଖାଯାଏ ।

'କୋ' ୨୧୩ ନମ୍ବର ଆଖୁଫସଲ ଭଲ ହେଲେ ପ୍ରତି ଏକରରୁ ୭୦ । ୮୦ ମହଣ ଗୁଡ଼ ବାହାରିବ ଏବଂ ଯେଉଁ ଜମିରୁ ଭଲରୂପେ ପାଣୀ ନିଗିଡ଼ି ଯାଇଥିବ ସେଠାରେ ଉପଯୁକ୍ତ ଯତ୍ନ ନିଆଗଲେ ୧୨୦ । ୧୩୦ ମହଣ ଗୁଡ଼ ମିଳି ପାରିବ । ପାଣୀ ଅଭାବ ସ୍ଥାନରେ ଏହି ଆଖୁ ଭଲ ହୁଏ । ଏଥିରେ ପରିଶ୍ରମ ମଧ୍ୟ ଅନ୍ୟ ଆଖୁଠାରୁ ଅଳ୍ପ ହୁଏ ।

ଯେଉଁ ଜମିରେ ବର୍ଷାଦିନେ ପାଣୀ ପୂରିରହି ଅନ୍ୟ କୌଣସି ଫସଲ ହୁଏ ନାହିଁ ସେଠାରେ ୨୦୫ ନମ୍ବର ଆଖୁ ଲଗାଇଲେ ବର୍ଷାରେ ନ ପଚି ଗଛ ବଢେ । ପାଣୀ ଶୁଖିଗଲେ ଆଖୁ ଉପଯୁକ୍ତ ହୁଏ । ଏହି ଆଖୁ କଟକ ଫାରମରେ ମିଳି ପାରିବ ।

**ମୋଟା ଆଖୁ ଓ ସରୁ ଆଖୁ** :—ଗୁଡ଼ ହିସାବରେ ଉଭୟେ ଭଲ । ମୋଟା ଅଖୁ ଗୋଟା ବିକ୍ରି ଭଲ ହୁଏ । ଏଣୁ ଲାଭ ବେଶୀ । ପାଗ ଯୋଗ କଳୁ ଏକ । ମୋଟା ଅଖୁ ଭାଲୁ ଖାଇବାର ଭୟ ଅଛୁ ଏଣୁ ଜାଗିବା ଅବଶ୍ୟକ । ଫସଲ୍ କଲେ ଜଗିବା ଉଚିତ ।

ଅଖୁଫସଲରେ ମାଣ ପ୍ରତି ୧୦୦। ୧୫୦ ଟଙ୍କା ଖର୍ଚ୍ଚ ହୁଏ ଏବଂ ତା'ର ଚଉଗୁଣ ଲାଭ ହୁଏ ।

**ମୂଳିଆଖୁ** :—ଲଗା ଅଖୁ ପରି ଏଥିରେ ପାଣି ଦିଅ ଯାଏନାହିଁ କାରଣ ତା'ର ଚେର ବହୁତ ଦୂର ଯାଇଥାଏ । ଏହା କଲେ ଭଗାର ବେଶ୍ ଲାଭ ହୁଏ ।

---

# କପା

ଅମ୍ଭ ଜିଲ୍ଲାର କୃଷକମାନଙ୍କପକ୍ଷେ ଯେପରି ଧାନ ଗୋଟିଏ ପ୍ରଧାନ ଫସଲ୍, କପାଗଛ ମଧ୍ୟ ସେହିପରି ଅଟେ । ଅମ୍ଭମାନଙ୍କର ପୂର୍ବପୁରୁଷମାନେ ଏ ଦୁଇଗୋଟି ଫସଲଦ୍ୱାରା ଜୀବିକାନିର୍ବାହ କରୁଥିଲେ । ଧାନ ଦାନାପାଇଁ, କପା ଲୁଗାପାଇଁ । ବର୍ତ୍ତମାନ କପାଗଛ ବିଲ୍‌କୁଲ୍ ଉଠାଇଦେଇ ସେମାନଙ୍କର କଷ୍ଟାର୍ଜିତ ଧନ ଧାନଗଣ୍ଡିକ ବସ୍ତ୍ର ବିନିମୟରେ ବିଦେଶକୁ ପଠାଇ କାଙ୍ଗାଳ ହୋଇଛନ୍ତି; ଏବଂ ନିଜର ପରିଧେୟ ବସ୍ତ୍ରାଚ୍ଛାଦନନିମନ୍ତେ ବିଦେଶକୁ ଅନାଇ ବସିଅଛନ୍ତି । ଲୋକମାନଙ୍କର ଏବଂ ସମାଜର ଦଶା ବର୍ତ୍ତମାନ ପକ୍ଷାଘାତପରି ହୋଇ ଉଠିଲାଣି । ଏହାର ଶୀଘ୍ର ପ୍ରତିକାର କରା ନଗଲେ ଯେ ବିଷମୟଫଳ ଭବିଷ୍ୟତରେ ଘଟିବ ତାହା ଅନୁମେୟ । ଏହି ଜିଲ୍ଲାର ଲୋକ ସଂଖ୍ୟା ୨୮୫୦୦୦ । ଯଦ୍ୟପି ଜି ଲୋକପ୍ରତି ବର୍ଷକୁ ଟ ୨ ଙ୍କାର ଲୁଗା ଧରାଯାଏ ତେବେ ଟ ୫୭୦୦୦୦୯ ( ପାଞ୍ଚଲକ୍ଷ ସତୁରି ହଜାର ଟଙ୍କା ) ବିଦେଶୀ ଲୋକମାନେ ଅମ୍ଭମାନଙ୍କଠାରୁ ନେଇ ଖାଉ ଅଛନ୍ତି । ଏହି ଭୀଷଣ ଦୁର୍ବଳତା ପ୍ରଜାମାନଙ୍କୁ ରକ୍ଷା କରିବା ଷ୍ଟେଟ୍‌ର ସମୂହ କଲ୍ୟାଣଦୃଷ୍ଟେ କର୍ତ୍ତବ୍ୟ । ଅମ୍ଭ ଦେଶରେ ଯଥେଷ୍ଟ କପାଗଛ ନିମନ୍ତେ ଜମି ଥିଲେ ସୁଦ୍ଧା କେହି କପା କରୁ ନାହାନ୍ତି । ଅନ୍ୟାନ୍ୟ ଅସୁବିଧା ଛାଡ଼ିଦେଲେ ବନ୍ୟଜନ୍ତୁମାନେ ଯେ ଏହାର ପ୍ରଧାନ କାରଣ ଏଥିରେ ସନ୍ଦେହ ନାହିଁ । ମୁଁ ମଧ୍ୟ ଅନେକଠାରେ ଦେଖିଛି କପାଚଅସରକୁ ବନ୍ୟଜନ୍ତୁଦ୍ୱାରା ନଷ୍ଟ ହୋଇଥାଏ ।

ସାମାନ୍ୟ ହେଟେଗୋଷ୍ଠା ମୃଗକୁ ରକ୍ଷା କରିବାକୁ ଯାଇ

କେତେ ବଡ଼ ଖର୍ଚ୍ଚ ହୋଇ ଯାଉଛି । ସେ ଚାଷ ବାଧ୍ୟତାମୂଳକ ହେବା ଦର୍କାର । କପା ପ୍ରଚୁର ପରିମାଣରେ ହେଲେ ଏ ଷ୍ଟେଟ୍‌ରେ ଗୋଟିଏ ଲୁଗାକଲ କାରଖାନା ସ୍ୱତନ୍ତ୍ରଭାବେ ଏ ଷ୍ଟେଟ୍ ନିମନ୍ତେ କରି ପାରନ୍ତେ । ତଦ୍ଦ୍ୱାରା ଷ୍ଟେଟ୍‌ର ସମ୍ପତ୍ତି ଷ୍ଟେଟ୍‌ରେ ରହନ୍ତା ।

**କପାଜମି**—ଉଚ୍ଚ, ବାଲୁକା, ଦୋରସା ଜମି ତୁଳାପାଇଁ ଭଲ । ବେଶୀ ବାଲିଆ ଜମି ହେଲେ ତୁଳା ଭଲ ହୁଏ ନାହିଁ । କଳାମାଟି ( ଥୋଡ଼ା ଅଂଶ ବେଶୀଥିଲେ ) ତୁଳାପାଇଁ ଉତ୍କୃଷ୍ଟ । ବର୍ଷାକାଳରେ ପାଣି ଜମାହୋଇ ରହିବ ନାହିଁ । ଅଥଚ ଗ୍ରୀଷ୍ମକାଳରେ ଅତିଶୟ ଶୁଷ୍କ ହେବ ନାହିଁ । ହେଲେ ପାଣି ଦେବାର ସୁବିଧା ଥିବ । ଏପରି ଜମିରେ କପା କରିବା ସୁବିଧାଜନକ । ଆମ୍ଭ ଷ୍ଟେଟ୍‌ରେ ଏପରି ଅନେକ ସ୍ଥାନ ଅଛି ଯେଉଁଠି ଖୁବ୍ ଭଲ କପା କରି ଯାଇପାରେ । ବହୁକାଳରୁ ଯେଉଁ ଜମିରେ ଗଛପତ୍ର ଇତ୍ୟାଦି ପଡ଼ି ପଚିଥାଏ ସେଠାରେ ମଧ୍ୟ କପା ଭଲ ହୁଏ ।

**ଚାଷ**—ଫାଲ୍ଗୁନ ମାସଠାରୁ ଜ୍ୟେଷ୍ଠମାସ ପର୍ଯ୍ୟନ୍ତ ନିତାନ୍ତ କମ୍ ଦଶଥର ହଳ ଓ ମଇ କରିବାକୁ ହେବ । ମାଟିରେ ଢେଲା ରହିବ ନାହିଁ । ଏ ବିଷୟରେ ଖନା ବଚନ ଅଛି ।

ଷୋଳ ଚାଷେ ମୂଳା
ତାର ଅର୍ଦ୍ଧେ ତୁଳା
ତାର ଅର୍ଦ୍ଧେ ଧାନ
ବିନା ଚାଷେ ପାନ ।

ଦିନେ ଚାଷକରି ତା'ପରେ ଚାରି ପାଞ୍ଚ ଦିନ ଛଡ଼ା ଅନ୍ତରରେ ଏପରି ଭାବରେ ଚାଷ କରିବାକୁ ହେବ । ଦୁଇ ଚାରିଥର ଚାଷ କଲା ପରେ ସାର ଦେବା ଆବଶ୍ୟକ ହୁଏ । ଗୋବର, ଖତ ଶୁଖାଇ ତହିଁରେ

ପାଉଁଶ ମିଶାଇଦେଲେ ଭଲ ହୁଏ । ଗୋବର ଶୁଖି ନଥିଲେ ବାଲରେ ବହୁତ କୀଟ ଦେଖାଯାନ୍ତି । ହାଡ଼ଗୁଣ୍ଡା, ଛେଳବଷ୍ଠା, ଗୋମୂତ୍ର, ଯବକ୍ଷାର ଇତ୍ୟାଦି ମଧ୍ୟ ଦିଆଯାଏ । ଏଥି ମଧ୍ୟରୁ ଗୋବର, ଗୋମୂତ୍ର ଇତ୍ୟାଦି ସହଜରେ ମିଳେ । କପାର ପିଡିଆ ମଧ୍ୟ କପା ବାଲପକ୍ଷରେ ବିଶେଷ ଉପଯୋଗୀ ।

**ବୁଣା ବା ରୁଆ**—କପାମଞ୍ଜି ବୁଣା ଯାଇପାରେ କିମ୍ବା ଚାଳ ପକାଇ ରୁଆ ଯାଇପାରେ । ମଞ୍ଜି ବୁଣିଲେ ଏପରି ବୁଣିବାକୁ ହେବ ଯଦ୍ଦ୍ୱାରା କପାମଞ୍ଜି ମାଟି ଭିତରେ ୧ ଇଞ୍ଚ ଗଭୀର ମଧ୍ୟରେ ରହେ । ତହିଁରୁ ବେଶୀ ହେବା ଠିକ୍ ନୁହେଁ ।

ସାଧାରଣତଃ ୬ ପ୍ରକାର କପା ଦେଖାଯାଏ । (୧) ବାର୍ଷିକ-ଫସଲ—ଏହା ଏକବର୍ଷ ମଧ୍ୟରେ ଆମଦାନୀ ହୁଏ । ( ) ଗୁଳ୍ମଜାତୀୟ-ଗଛ, ୩ । ୪ ହାତ ଦୀର୍ଘ ହୁଏ ଓ ୭ । ୮ ବର୍ଷ ଯାଏ ବଞ୍ଚେ । ବୈଶାଖ ଓ ଜ୍ୟେଷ୍ଠ ମାସରେ ଏହା ଲଗାଇବାକୁ ହୁଏ । ଏମାନଙ୍କ ମଧ୍ୟରେ ବଙ୍ଗ ଦେଶର " ବାଂଗୀ " କପା ପ୍ରସିଦ୍ଧ । ଏହା ଉଚ୍ଚରେ ୧୦ । ୧୨ ହାତ ହୁଏ ଓ ୧୦ । ୧୨ ବର୍ଷ ମଧ୍ୟ ବଞ୍ଚେ । ଅସଂଖ୍ୟ ଫଳ ହୁଏ । ପ୍ରତ୍ୟେକ ଗଛରୁ ପ୍ରତି ବର୍ଷ ଅଧସେର ତୁଳା ଆମଦାନୀ ହୁଏ । ଏଥିରୁ ନ ୮୦ ନମ୍ବର ସୂତା ଅନାୟାସରେ ପ୍ରସ୍ତୁତ ହୋଇପାରେ । ଏହି ଜାତୀୟ କପାକୁ ଗୁଳ୍ମାକାର ଲଗାଇଲେ ଭଲ । ସିଅର କରି ମଞ୍ଜି ପୋତିଲେ ହୋଇପାରେ । ଗୁଳ୍ମ ହୋଇବାବେଳେ ତେଲିଆ ପ୍ରାୟ ୩ ଭାଗ କାଟି ଦେବା ଆବଶ୍ୟକ । ଯେଉଁ ମଞ୍ଜି ବୁଣାଯାଏ ତାହା ଯେପରି ୩ ହାତ ଅନ୍ତରରେ ଗୋଟିଏ ଗୋଟିଏ ଗଛ ହୁଏ ତାହା ଦେଖିବା ଆବଶ୍ୟକ । ତାହା ନହେଲେ ଗଛକୁ ଗଛ ଲାଗିଯାଏ ।

**ଗୁଳ୍ମକରିବା ପ୍ରଣାଳୀ**—ମଞ୍ଜିକୁ ଗୋଟିଏ ପାତ୍ରରେ ଘ ୧୨ ଘଣ୍ଟା

କାଳ ଉଜାଇରଖି ତା'ପରେ ଚାରା କରିବା ସ୍ଥାନରେ ୪ ଅଙ୍ଗୁଳି ବ୍ୟବଧାନରେ ପୋତିବାକୁ ହୁଏ । ମାଟି ବାଲୁକା ଥିଲେ ଓ ପାଣି ଦେଲେ ୫।୬ ଦିନ ମଧ୍ୟରେ ଚାରା ହୁଏ । ଚାରାରେ ୫।୬ଟି ଲେଖାଏଁ ପତ୍ରହେଲେ ଏହା କ୍ଷେତ୍ରରେ ରୋପଣ କରିବାର ଉପଯୁକ୍ତ ହୁଏ । କପାମଞ୍ଜି ଗୋବରପାଣିରେ ବୁଡ଼ାଇ ରଖିଲେ ଶୀଘ୍ର ଅର୍ଥାତ୍ ୪ ଦିନରେ ଗଜା ବାହାରେ । ୫।୬ ଦିନ ମଧ୍ୟରେ ଗଜାଗଛସବୁ ଭୂଇଁରେ ଲାଗିଯାଏ । ତାପରେ ପ୍ରତ୍ୟହ ସନ୍ଧ୍ୟାବେଳେ ପାଣି ଦେଇ ଖରାବେଳେ ଘୋଡ଼ାଇ ରଖିବା ଆବଶ୍ୟକ । ବର୍ଷାହେଲେ ଭଲ । ବର୍ଷା ନହେଲେ ପାଣି ମଡାଇବା ଆବଶ୍ୟକ ହୁଏ । ଗଛ ଢେଙ୍ଗାହୋଇ ବଢିଗଲେ କାଟିଦେବା ଉଚିତ । ତାହାହେଲେ ଡାଳ ବାହାରି ଗଛ ପୁଷ୍ଟ ହୁଏ ଓ ପୁଷ୍ଟ ଗଛରେ ବହୁତ ଫଳ ହୋଇଥାଏ ।

ଆଶ୍ୱିନ ମାସଠାରୁ ଗଛ ଫୁଲ ଧରିବାକୁ ଆରମ୍ଭ କରେ । ପୌଷ ମାସଠାରୁ ଫଳ ପାଚିବାକୁ ଲାଗେ ଓ ଫାଟିଗଲେ କପା ତୋଳିବାର ଉପଯୁକ୍ତ ହୁଏ ।

**ଆମଦାନୀ**—ଖରାବେଳେ କପା ତୋଳିବା ଉଚିତ । ବଡ଼ି ସକାଳେ ତୋଳିଲେ କାକର ହେତୁ ଓଦା ହୋଇଯାଏ । ପ୍ରତିଦିନ ତୋଳିବା ଉଚିତ । ତା ନହେଲେ ମଇଳା ହୋଇ ଯାଇପାରେ । ତୁଳା ସଂଗ୍ରହକରି ପରିଷ୍କାର ସ୍ଥାନରେ ରଖିବା ଆବଶ୍ୟକ । ମଞ୍ଜିକୁ ନଷ୍ଟ କରିବା ଅନ୍ୟାୟ । ଏଥିରେ ଅନେକ କାର୍ଯ୍ୟ ହୁଏ ।

କପାଗଛ ମଧ୍ୟରେ ବହୁତ ଜାଗା ଖାଲି ଥାଏ । ଏଥି ମଧ୍ୟରେ ଚିନାବାଦାମ ଲଗାଇଲେ ଲାଭ ହୁଏ । ଏ ଗଛ ମଧ୍ୟ କପାଗଛକୁ ସାହାଯ୍ୟ କରେ ।

ଯତ୍ନ ସହକାରେ ଅବାଦ କରି ପାରିଲେ ଏକମାଣ ଜମିରୁ

ଅମ ଏ ଅଞ୍ଚଳରେ ପ୍ରାପ୍ତ ୨ ମହଣ ବା ଦେଢ ମହଣ ତୁଳା ଆମଦାନୀ ହୋଇପାରେ । ମହଣକର ମୂଲ୍ୟ ଟ ୨୫୯ ଧରଲେ ପ୍ରାପ୍ତ ଟ ୪୮।୫୦ଙ୍କା ଆମଦାନୀ ହୋଇପାରେ । ଏହାଛଡ଼ା ମଞ୍ଜିର ଲାଭ ମଧ୍ୟ ସ୍ୱତନ୍ତ୍ର । କପାମଞ୍ଜି ଗୋରୁ ଖାଇଲେ ଭଲ ଦୁଗ୍ଧ ଦଅନ୍ତି ।

କପା ଆମଦାନୀ କରି ନିଜେ ସୂତା କାଟି ପାରିଲେ ବିଶେଷ ଉପକାର ହୁଏ । ଯେଉଁ କପା ଯେପରି ଚାଷ, ସାର ଓ ପାଣି ପାଉଥାଏ ତହିଁରୁ ସେପରି ଉତ୍କୃଷ୍ଟ କପା ବାହାରେ । ଏହାର ସୂତା ସରୁ ଓ ପାକଲ ହୁଏ ।

ବଡ କପାର ମଞ୍ଜି ଆମରାଜ୍ୟରେ ଅନେକ ସ୍ଥାନରେ ମିଳପାରେ । ଏହାର ଚାଷ ଅଧିକ ଲାଭଜନକ । ଚାଷ ନକରି ମଧ ବାଡ଼ି ମାନଙ୍କରେ ବର୍ଷାକାଳର ଆରମ୍ଭରେ ଏହି କପାର ମଞ୍ଜି ପକାଇଦେଲେ ଗଛହୁଏ । ଏହାଦ୍ୱାରା ବାଡ଼ି ମଜବୁତ ହୁଏ । କପା ମଧ୍ୟ ଆମଦାନୀ ହୁଏ । ପ୍ରଥମ ବର୍ଷ ବର୍ଷାରେ ଗଛ ବଢ଼ିଗଲେ ତେଣିକି ଆଉ ମରେ ନାହିଁ । ଗଛର ଡ଼ାଳ ଇତ୍ୟାଦି ଭାଙ୍ଗିଦେବା ଠିକ୍ ନୁହେଁ ।

**କପା ମଞ୍ଜି**—ଏଠାରେ କପାମଞ୍ଜିର ତେଲ ବିଷୟରେ କୁହାଯିବ । ଷଷ୍ଠପ୍ରଦ ଫସଲରେ ତୁଳାପାଇଁ କପାଚାଷ ସମ୍ବନ୍ଧରେ ପୁଣି ବିଶେଷ ଭାବରେ କୁହାଯିବ ।

କେତେକ ବର୍ଷ ପୂର୍ବରୁ ଭାରତବର୍ଷର ଅଧିକାଂଶ ସ୍ଥାନରେ କପାମଞ୍ଜିର କୌଣସି ବ୍ୟବହାର ନଥିଲା । ଏ ପର୍ଯ୍ୟନ୍ତ ମଧ୍ୟ କେତେକ ସ୍ଥାନରେ କପାମଞ୍ଜି ଫୋପାଡ଼ି ଦିଆଯାଏ । କିନ୍ତୁ କପାମଞ୍ଜିରୁ ଅତି ଉତ୍ତମ ତେଲ ବାହାର କରି ଯାଇପାରେ । ପାଶ୍ଚାତ୍ୟ ଦେଶମାନଙ୍କରେ ରାନ୍ଧିବାପାଇଁ କପାମଞ୍ଜିର ତେଲ ବ୍ୟବହାର କରିଥାନ୍ତି । ସାବୁନପ୍ରସ୍ତୁତ କରିବାପାଇଁ ଏହି ତେଲର ବିଶେଷ ପ୍ରୟୋଜନ । ତୁଳା ବାହାର କରି

ନେବାପରେ ମଞ୍ଜି ଦେହରେ ଛୋଟ ଛୋଟ ଅଂଶୁ ରହିଥାଏ । ନାନା ଉପାୟରେ ଏହି ଅଂଶୁ ବାହାର କରି ଦିଆଯାଏ । ନୋହିଲେ ତେଲ ବାହାର କରିବା ଅସୁବିଧାଜନକ ହୁଏ । ମଞ୍ଜିକୁ ଏପରି ସଫାକରି ଘଣାରେ ପେଡ଼ିଲେ ଏକ ମହଣ ମଞ୍ଜିରୁ ପ୍ରାୟ ୧୦ ସେର ତେଲ ବାହାରି ପାରେ । ପିଡ଼ିଆ ଗୋରୁଙ୍କୁ ଖୁଆଇବାକୁ ହେଲେ ମଞ୍ଜିରୁ ଚୋପା ବାହାର କରି ପେଡ଼ିବା ଉଚିତ । ଦୁହାଁଳ ଗୋରୁ କପାପିଡ଼ିଆ ଖାଇଲେ ଅଧିକ ଦୁଧ ଦିଅନ୍ତି । କପାପିଡ଼ିଆ ସାରରୂପେ ମଧ୍ୟ ବ୍ୟବହାର କରାଯାଇପାରେ । ଏହା ଅତି ଉତ୍ତମ ସାର । ଏକମାଣ ଜମିରୁ ୬।୭ ମହଣ କପାମଞ୍ଜି ମିଳେ ।

---

# ୪ର୍ଥ ଅଧ୍ୟାୟ ।

## ଅଦା

ଅଦା ଏପରି ପ୍ରୟୋଜନୀୟ ଦ୍ରବ୍ୟ ଯେ, ଏହା ସମସ୍ତଙ୍କର ସୁପରିଚିତ । ଅଦା ମସଲାରୂପେ ତରକାରୀ ଇତ୍ୟାଦିରେ ବ୍ୟବହୃତ ହୋଇଥାଏ । ପୁଣି ଅଦା ବା ଅଦାରସ ବହୁଳଭାବରେ ଔଷଧରୂପେ ବ୍ୟବହୃତ ହୁଏ । ଅଦା ଅଗ୍ନିବର୍ଦ୍ଧକ, କୋଷ୍ଠପରିଷ୍କାରକ, କଫ-ହାରକ ଏବଂ ବାୟୁନାଶକ । ଅଦାରେ କେତେକ ପ୍ରକାର ଚଟଣୀ ଇତ୍ୟାଦି ମଧ୍ୟ ପ୍ରସ୍ତୁତ ହୁଏ । ଅଦାର ଅର୍କ ଜିନ୍‌ଜାରେଡ଼୍ ଇତ୍ୟାଦି ନାନାପ୍ରକାର ପାନୀୟରେ ସୁବାସ ହେବାପାଇଁ ବ୍ୟବହୃତ ହୋଇଥାଏ ।

ଆମ୍ଭମାନଙ୍କ ଦେଶରେ ଅଦାଫସଲ ସମସ୍ତେ କରନ୍ତି ନାହିଁ । କେବଳ ଏକଜାତୀୟ ବ୍ରାହ୍ମଣ ଏହା କରନ୍ତି । ଅନ୍ୟ କୌଣସି ଜାତି ଅଦା ଲଗାଇଲେ ବଂଶ ପଦାହେବ ବୋଲି ଭୟକରି ଅଦା ଲଗାନ୍ତି ନାହିଁ । ଏହା କେବଳ ଦେଶର କୁସଂସ୍କାର ମାତ୍ର । ପ୍ରକୃତରେ କାହାର କିଛି ଅନିଷ୍ଟ ହୁଏ ନାହିଁ । ଯେଉଁମାନେ ନିଜ ହାତରେ ଅଦା ଲଗାଇ ଅମଲ କରନ୍ତି ସେମାନଙ୍କର କୌଣସି ପ୍ରକାର ଅନିଷ୍ଟ ହୋଇନଥିବାର ଦେଖା ଯାଇଅଛି । ଅଦା ବେଶ୍ ଲାଭଜନକ ଫସଲ । କେବଳ ଭୁଲ୍ ଧାରଣାର ବଶବର୍ତ୍ତୀ ହୋଇ ଏହାର ଚାଷ ନକରିବା ନିଜର ଘାଟି ଏବଂ ନିଜର ନିର୍ବୋଧତା ମାତ୍ର ।

ହଳଦୀ ଯେପରି ମାଟିରେ ହୁଏ, ଅଦା ସେହିପରି ମାଟିରେ ହୁଏ । ତେବେ ମାଟି ଟିକିଏ ବଳୁଆ ଏବଂ ବାଲିଅଂଶ ବା ଫସ୍‌ଫସିଆ

ଥିଲେ ଅଦା ଭଲହୁଏ । ମାଟିରେ ଅଧିକ ଜଳ ରହିଲେ ଅଦାପକ୍ଷରେ ଅନିଷ୍ଟକର । ଜ୍ୟେଷ୍ଠମାସରେ ଜମିକୁ ଉତ୍ତମରୂପେ କୃଷକର ମଇ ଦ୍ୱାରା ଢେଲାସବୁ ଗୁଣ୍ଡ କରାଯାଏ । ତତ୍‌ପରେ ସିଆର କରି ଏକ ଗୃଖଣ୍ଡ ଠାରୁ ଏକହାତ ଛଡ଼ାରେ ଧାଡ଼ି ଧ଼ାଡ଼ି କରି ବିହନ ପୋତାଯାଏ ଏବଂ ମାଟି ଘାଙ୍କି ଦିଆଯାଏ । ମାଣପ୍ରତି ୩ । ୪ ମହଣ ବିହନ ଆବଶ୍ୟକ ହୁଏ । ଗଛ ବଢ଼ୁଥିବା ସମୟରେ ତାହା ମୂଳକୁ ୨ । ୩ ଥର ମାଟି ଦେବା ଆବଶ୍ୟକ । ଏହି ସମୟରେ ଘାସ ଇତ୍ୟାଦି ମଧ ବାଛି ଦିଆଯାଏ । ମାଟି କୋଡ଼ିଦେବାବେଳେ ମାଣପ୍ରତି ୨ମହଣ କରି ଜଡ଼ା ବା ସୋରିଷପିଡ଼ିଆ ଥରେ ବା ଦୁଇଥର ଦେଲେ ଅଦା ଭଲ ଫଳେ କିମ୍ବା ପ୍ରଥମେ ହଳ କରିବା ସମୟରେ ପଶୁ (ଗୋବର) ଖତ ମାଣପ୍ରତି ୧୦ । ୧୫ ଗାଡ଼ି ପର୍ଯ୍ୟନ୍ତ ଦିଆ ଯାଇପାରେ । ଅଦାର ଗଛ ଏବଂ ପତ୍ର ସବୁ ଭଲରୂପେ ଶୁଖିଗଲେ ମାଘ ଫାଲ୍‌ଗୁନ ମାସରେ ଅଦା ଖୋଳାଯାଏ । ମାଣପ୍ରତି ୫୦ । ୬୦ ମହଣ ଅଦା ଅମଳ ହୁଏ ।

ହଳଦୀପରି ଅଦା ମଧ ଆମ୍ବତୋଟା କିମ୍ବା ଅନ୍ୟାନ୍ୟ ବଡ଼ ଗଛ ମାନଙ୍କର ଛାଇ ତଳରେ କରା ଯାଇପାରେ ।

---

**ଶୁଣ୍ଠି**—ଅଦାରୁ ଶୁଣ୍ଠି ପ୍ରସ୍ତୁତ ହୁଏ । ଯେଉଁ ଅଦାକୁ ଶୁଣ୍ଠି କରାଯାଏ ତାହାକୁ ଥଣ୍ଡା ବା ଗରମ ଜଳରେ ଭିଜାଇ ତତ୍‌ପରେ ଘଷି, ଚୋପା ଛଡ଼ାଇ ଦିଆଯାଏ । ତତ୍‌ପରେ ପାଣୀରେ ଧୋଇଦେଇ ଶୁଖାଇ ଦିଆଯାଏ । ଏହାପରେ ପୁଣି ଥରେ ପାଣୀରେ ଅଳ୍ପକ୍ଷଣ ଭିଜାଇ ଶୁଖାଇ ଦିଆଯାଏ । ଶୁଖିଗଲେ ଅଖା ଇତ୍ୟାଦିରେ ପୁଣି ଥରେ ଘଷିଲେ ଅଦା ଶୁଣ୍ଠି ଆକାରରେ ବିକ୍ରୟ ଉପଯୋଗୀ ହୁଏ ।

---

# ଲଙ୍କାମରିଚ ।

ଆମ୍ଭମାନଙ୍କ ଦେଶରେ ପ୍ରାୟ ସମସ୍ତେ ଅଳ୍ପ ଅଧିକ ପରିମାଣରେ ତରିକାରିରେ ଲଙ୍କାମରିଚ ବ୍ୟବହାର କରିଥାନ୍ତି । ପ୍ରାୟ ସବୁ ପ୍ରକାର ଅଚାର ଓ ଚଟଣୀରେ ଲଙ୍କାମରିଚ ଗୋଟିଏ ଉପଯୋଗ ।

ଲଙ୍କାମରିଚ ନାନାପ୍ରକାରର । ଲମ୍ବା, ଗୋଲ (କାଇଗଣିଆ), ନାଲି, ହଳଦିଆ, ବଡ଼ ଏବଂ ଛୋଟ (ଧାନୁଆ) ଇତ୍ୟାଦି । ସୂର୍ଯ୍ୟମୁଖୀ ଲଙ୍କାମରିଚର ରଙ୍ଗ କଞ୍ଚାବେଳେ କଳା ଥାଏ । ଦକ୍ଷିଣୀ ଲଙ୍କାମରିଚ ଖୁବ୍ ଲମ୍ବହୁଏ । କଲିକତା ଲଙ୍କାମରିଚ ନାମକ ଏକପ୍ରକାର ଲଙ୍କାମରିଚ ଦେଖାଯାଏ । ତାହା ଲମ୍ବ ଅଥଚ ମୋଟା ଏବଂ ଦେଖିବାକୁ ଖୁବ୍ ନାଲି । ଏଥିରେ ରାଗ ଖୁବ୍ କମ୍ ଥାଏ । ଏହାକୁ ତରକାରିରେ ପକାଇଲେ ତରକାରି ଦେଖିବାକୁ ସୁନ୍ଦର ହୁଏ ଏବଂ ସୁସ୍ୱାଦୁ ମଧ୍ୟ ହୁଏ । ଧାନୁଆ ଲଙ୍କାମରିଚ ଖୁବ୍ ଛୋଟହେଲେ ମଧ୍ୟ ଏହା ଅତ୍ୟନ୍ତ ରାଗ (କଟୁ) । ଅଳ୍ପ ଏବଂ ଅଧିକ ରାଗବିଶିଷ୍ଟ ଭିନ୍ନ ଭିନ୍ନ ଜାତିର ଅନେକ ପ୍ରକାର ଲଙ୍କାମରିଚ ଦେଖାଯାଏ ।

ଦୋରସା, ଜବଙ୍ଗା, ଏବଂ ନଈକୂଳିଆ ପଟୁମାଟିରେ ଲଙ୍କାମରିଚ ଭଲ ହୁଏ । ଗେଙ୍ଗୁଟିଆ ମାଟି ଦୋରସା ଥିଲେ ମଧ୍ୟ ଲଙ୍କାମରିଚର ବେଶ୍ ଉପଯୋଗୀ ହୁଏ ।

ଜ୍ୟେଷ୍ଠ, ଆଷାଢ଼, ଆଶ୍ୱିନ ଏବଂ କାର୍ତ୍ତିକ ମାସରେ ଲଙ୍କାମରିଚ ଲଗାଯାଏ । ଲଗାଇବାର ପ୍ରାୟ ଏକମାସ ପୂର୍ବରୁ ଟିକିଏ ଭଲ ମାଟିରେ ତଳି ପକାଇବାକୁ ହୁଏ । କେତେକୀ ସେଚରେ ଦେଉଥା' ମଞ୍ଜି ତଳି ପକାଇଲେ ଏକମାନ ଜମି ରୁଆ ଯାଇପାରେ । ଅଧିକ ଖରା ବା ବର୍ଷାରୁ

ରକ୍ଷା କରିବାପାଇଁ ଡାଳକୁ ଡାଙ୍ଗ ଇତ୍ୟାଦି ଦ୍ୱାରା ଝୋଡ଼ାଇବାକୁ ହୁଏ । ଗଛ ପ୍ରାୟ ଛଅ ଅଙ୍ଗୁଳ ଉଚ୍ଚ ହେଲେ ରୋଇବାର ଉପଯୁକ୍ତ ହୁଏ ।

ଜମିକୁ ଭଲରୂପେ ଚଷି ମାଟି ଗୁଣ୍ଡହେଲେ ମଇଦ୍ୱାରା ଚୌରସ କରାଯାଏ । ତତ୍ପରେ ଧାଡ଼ିଧାଡି କରି ଗଛଗୁଡ଼ିକ ଏକହାତ ଅନ୍ତରରେ ରୁଅଯାଏ । ରୋଇବା ପରେ ଗଛ ମୂଳରେ ଟିକିଏ ଟିକିଏ ପାଣି ଦିଆଯାଏ କିମ୍ବା ପ୍ରଥମେ ପାଣିଦେଇ ତତ୍ପରେ ରୁଅଯାଏ । ରୋଇବା ପରେ ୭ । ୮ ଦିନ ପର୍ଯ୍ୟନ୍ତ ପ୍ରତିଦିନ ସକାଳେ ବା ଅପରାହ୍ନ ଗଛରେ ପାଣି ଦିଆଯାଏ । ଏହାପରେ ଥରେ ଦୁଇଥର ପାଣି ମଡ଼ାଇ ମାଟି ଖୋଡି ଦେଇ ଗଛ ମୂଳରେ ହୁଡ଼ା ବାନ୍ଧି ଦିଆଯାଏ ; ଏବଂ ଘାସ ଇତ୍ୟାଦି ମଧ୍ୟ ବାଛି ଦିଆଯାଏ । ଏହି ହିସାବରେ ମାଣପ୍ରତି ୭ ମହଣ ଲେଖାଏଁ ପିଡ଼ିଅ ଗଛମୂଳରେ ଦେଲେ ଭଲ । ଲଗାଇବାର ପ୍ରାୟ ୫ମାସ ପରେ ଲଙ୍କାମରିଚ ପାଚେ କିନ୍ତୁ ୨ ମାସ ପରେ କଞ୍ଚା ଖାଇବାର ଉପଯୁକ୍ତ ହୁଏ । ପ୍ରାୟ ୪ ଥରରେ ଲଙ୍କାମରିଚ ତୋଳାଯାଏ । କାରଣ ସମସ୍ତ ଫଳ ଏକାସଙ୍ଗରେ ପାଚେନାହିଁ । ତୋଳିବାପାଇଁ ମାଣପ୍ରତି ୫ଜଣ ଲୋକ ପ୍ରତିଥର ଆବଶ୍ୟକ । ତୋଳିବା ପରେ ପାଚିଲା ଲଙ୍କାମରିଚ ପ୍ରାୟ ୧୫ଦିନ ଖରାରେ ଶୁଖାଇବାକୁ ହୁଏ । କାକର ଲାଗିଲେ ଲଙ୍କାମରିଚର କୌଣସି ଅନିଷ୍ଟ ହୁଏ ନାହିଁ । ତେଣୁ ରାତ୍ରିଦିନ ବାହାରେ ପକାଇ ରଖିଲେ ମଧ୍ୟ କିଛି ଖତି ହୁଏ ନାହିଁ । କିନ୍ତୁ ବର୍ଷାର ଆଶଙ୍କାଥିଲେ ଉଢଭେ ରଖିବା ଆବଶ୍ୟକ । ଲଙ୍କାମରିଚ ଶୁଖିଲେ ଓଜନର ପ୍ରାୟ ଚଉଠେ କମିଯାଏ । ମାଣପ୍ରତି ୫ ମହଣରୁ ୧୨ ମହଣ ପର୍ଯ୍ୟନ୍ତ ଅମଳ ହୋଇପାରେ । ମାଣପ୍ରତି ସମୁଦାୟ ଖର୍ଚ୍ଚ ପ୍ରାୟ ୪୦ ଟଙ୍କା ପଡ଼େ । ଯେଉଁ ଅଞ୍ଚଳ ଲଙ୍କାମରିଚ ଚାଷର ଉପଯୋଗୀ ନୁହେଁ ସେ ସ୍ଥଳରେ ଏହି ଫସଲ କରିବା ନିରାପଦ ନୁହେଁ ।

# ପିଆଜ ।

ବଡ଼, ଶ୍ୱେତ, ଲାଲ, ଧୋବ ଏବଂ ଲାଲଧୋବମିଶା ଅନେକ ଇକମର ପିଆଜ ଅଛି । ଅମ୍ଭମାନଙ୍କ ଦେଶରେ ସାଧାରଣତଃ ଦୁଇପ୍ରକାର ପିଆଜ ଦେଖାଯାଏ । ପାଟଣୀ ଏବଂ ଦେଶୀ । ପାଟଣୀ ପିଆଜକୁ ଜଲ ପିଆଜ କହନ୍ତି । କାରଣ ମଞ୍ଜି ବୁଣି ଏହି ପିଅଜ ଉତ୍ପନ୍ନ କରାହୁଏ । ଜଲ ପିଆଜ ବେଶ ବଡ ଓ ପୁଷ୍ଟ ଏବଂ ଦେଖିବାକୁ ମଧ୍ୟ ସୁନ୍ଦର । ଗୋଟିଏ ଗୋଟିଏ ପିଅଜ ବା ପିଆଜର କଲି ଲଗାଇ ଦେଶୀ ପିଆଜ ଉତ୍ପନ୍ନ କରାଯାଏ । ଏହା ସେତେ ବଡ଼ ବା ଗୋଲ ହୁଏ ନାହିଁ । ବମ୍ବେଇ ପିଅଜ ନାମକ ଅଉ ଏକଜାତୀୟ ପିଅଜ ଅଛି । ଏହା ମଧ୍ୟ ଖୁବ୍ ବଡ଼ ଏବଂ ଉତ୍ତମ ଅଟେ । ଏହା ବମ୍ବେଇ ଅଞ୍ଚଳରେ ହୁଏ ।

ଜଲ ପିଆଜ ଲଗାଇବାକୁ ହେଲେ ପ୍ରଥମେ ଭାଦ୍ର ଆଶ୍ୱିନ ମାସରେ ମଞ୍ଜି ବୁଣି ତଳ ପକାଇବାକୁ ହୁଏ । ଗଛ ପ୍ରାୟ ୫ । ୬ ଅଙ୍ଗୁଳ ଉଚ୍ଚ ହେଲେ ତାକୁ ଉଠାଇ ନେଇ ମାର୍ଗଶୀର ମାସରେ ରୁଆଯାଏ । ଏକସେର ମଞ୍ଜିର ତଳରୁ ଏକମାଣ ଜମି ରୁଆ ଯାଇପାରେ । ମଞ୍ଜି ଲଗାଇଲେ ଖର୍ଚ୍ଚ ଅନେକ କମ୍ ପଡ଼େ । ପିଅଜ ବା କଲି ଲଗାଇଲେ ୨ । ୩ ମହଣ ବହନ ଆବଶ୍ୟକ ହୁଏ ଏବଂ କାର୍ତ୍ତିକ ମାସରେ ଲଗାଯାଏ । ପିଆଜମଞ୍ଜି ଏକ ବର୍ଷରୁ ଅଧିକ ରହେ ନାହିଁ । ମଞ୍ଜି ଏକ ବର୍ଷରୁ ଅଧିକ ପୁରୁଣାହେଲେ ଗଛ ହୁଏନାହିଁ । ଏହି କାରଣରୁ ଅନେକେ ମଞ୍ଜି ନଲଗାଇ କଲି ଲଗାନ୍ତି ।

ଦୋରସା ମାଟି ଉର୍ବରା ଏବଂ ବାଲୁକା ନହେଲେ ପିଅଜ ଭଲ ହୁଏ ନାହିଁ । ମାଟିକୁ ଭଲରୂପେ ଚଷକରି ଗୁଣ୍ଡ କରାଯାଏ । ତତ୍ପରେ

ଉନ୍ନ ପିଆଜ ହେଲେ ଗୋଟିଏ ଗୋଟିଏ ଗଛ ପ୍ରାୟ ୬ ଅଙ୍ଗୁଳି ଛଡ଼ାରେ ରୁଆଯାଏ; କିମ୍ବା ଦେଶୀ ପିଆଜ ହେଲେ ଗୋଟିଏ ଗୋଟିଏ ଗଜଜିଆ ପିଆଜ ( ଗଜା ବାହାରିଥିବା ପିଆଜ ) ବା ପିଆଜର କଳି ୬ ଅଙ୍ଗୁଳି ଛଡ଼ାରେ ପୋତାଯାଏ । ରୋଇଲେ ପ୍ରଥମେ ପାଣି ମଡ଼ାଇ ପରେ ରୁଆଯାଏ । କିନ୍ତୁ ଗଜାପିଆଜ ପୋତିଲେ ପରେ ପାଣି ଦିଆଯାଏ । ଏହାପରେ କୋଡ଼ିଦେଇ ଗଛ ମୂଳକୁ ମାଟି ଦିଆଯାଏ ଏବଂ ବଛଯାଏ । ମଝିରେ ମଝିରେ ପାଣିଦେବା ମଧ୍ୟ ବିଶେଷ ଆବଶ୍ୟକ । ଗୋବର, ଖଡ଼, ପାଉଁଶ ଏବଂ ଖାରମାଟି ପିଆଜ ପକ୍ଷରେ ଉତ୍ତମ ସାର । ମାଟି ଉର୍ବରା ନଥିଲେ ସାର ନଦେଲେ ପିଆଜ ଭଲ ହୁଏ ନାହିଁ । ପିଆଜ ଏବଂ ଉନ୍ନପିଆଜ ଫଗୁଣ ଚୈତ୍ର ମାସରେ ଅମଳ ହୁଏ । ଖୋଳି ନେବାର ମାସେ ଦୁଇ ମାସ ପୂର୍ବରୁ ପିଆଜଗଛର ପତ୍ର ମଳିଦେଇ ଜମିଉପରେ ଅଉଜାଇ ଦେବା ଉଚିତ । ଏହାଦ୍ୱାରା ପିଆଜଗଣ୍ଠି ଅଧିକ ପୁଷ୍ଟହୋଇ ବଢିପାରେନାହିଁ ଏବଂ ପିଆଜ ଭଲ ହୁଏ । ମାଣପ୍ରତି ୬୦ ରୁ ୧୦୦ ମହଣ ପର୍ଯ୍ୟନ୍ତ ପିଆଜ ମିଳିପାରେ ।

---

# ରସୁଣ ।

ପିଆଜ ଯେପର ମାଟିରେ ହୁଏ, ରସୁଣ ମଧ୍ୟ ସେପର ମାଟିରେ ହୁଏ । ଏହାର ଗୁଣବଧି ଇତ୍ୟାଦି ମଧ୍ୟ ପିଆଜପର । ରସୁଣର ଗୋଟିଏ ଗୋଟିଏ " କଲି " ଆଶ୍ୱିନ କାର୍ତ୍ତିକ ମାସରେ ଲଗାଯାଏ । ଫଗୁଣ ବା ଚୈତ୍ର ମାସରେ ରସୁଣ ଖୋଳି ଅମଳ କରାଯାଏ । ମାଣପ୍ରତି ୧୫ । ୨୦ ସେର ବିହନ ଲାଗେ ଏବଂ ୪୦ । ୫୦ ମହଣ ରସୁଣମିଳେ ।

ଅମ୍ଭମାନଙ୍କ ଦେଶରେ ଶାଗ ଇତ୍ୟାଦି ରାନ୍ଧିବାରେ ରସୁଣ ବ୍ୟବହୃତ ହୋଇଥାଏ । ଔଷଧରେ ମଧ୍ୟ ରସୁଣ ପ୍ରୟୋଗ କରାଯାଏ । ଏହା ଉତ୍ତେଜକ, କଫନିଃସାରକ ଏବଂ ବଳଦାୟକ । କର୍ଣ୍ଣରୋଗରେ ମଧ୍ୟ ପ୍ରୟୋଗ କରାଯାଇଥାଏ । ଖୁବ୍ କ୍ଳାନ୍ତ ପରେ କେତେକ ଫଡା ରସୁଣ ଧୀରେ ଧୀରେ ଚୋବାଇ ଖାଇଲେ କ୍ଳାନ୍ତ ଦୂର ହୁଏ ବୋଲି ଜଣେ ସାହେବ ( ଡ଼ମକ୍ ) ମତ ପ୍ରକାଶ କରିଅଛନ୍ତି ।

# ଆଳୁ

ପ୍ରଥମରେ କୌଣସି ବିଦେଶରୁ ଆମ ଦେଶକୁ ଆସିଥିଲା ବୋଲି ଏହାର ନାମ ବିଲାତି ଆଳୁ ହୋଇଅଛି । ଆଜିକାଲି ଏହି ଆଳୁ ସମ୍ପୂର୍ଣ୍ଣରୂପେ ଆମ୍ଭମାନଙ୍କ ଦେଶରେ ହୋଇ ଗଲାଣି । ଓଡ଼ିଶା ମଧ୍ୟରେ କଟକ ଜିଲ୍ଲାରେ ଆଳୁଚାଷ ଅଧିକ ହେଉଥିବାର ଦେଖାଯାଏ । କିନ୍ତୁ ଅନ୍ୟାନ୍ୟ ଜିଲ୍ଲାରେ ମଧ୍ୟ ଆଳୁଚାଷ ଅଧିକ ପରିମାଣରେ କରିବା ଉଚିତ । କାରଣ ଆଳୁଫସଲ ଅଧିକ ଲାଭଜନକ । ବିଲାତିଆଳୁ ଅନେକ ଜାତିର ଦେଖାଯାଏ । ତନ୍ମଧ୍ୟରୁ ତିନି ଜାତି ପ୍ରଧାନ । ଦେଶୀ, ପାଟଣୀ ଓ ନଇନିତାଲ । ଦେଶୀ ଅପେକ୍ଷାକୃତ ଶ୍ରେଷ୍ଠ ଏବଂ ଆକାରରେ ଗୋଲ । ପାଟଣୀର ଚୋପା ଅଳ୍ପ ଲାଲ, ନଇନିତାଲ ବଡ, ଆକାରରେ ଲମ୍ବା, ଚୋପା ଚିକ୍କଣ ଓ ଆଖି ଶ୍ରେଷ୍ଠ ଏବଂ ସିଝାଇଲେ ଦାନା ଭୁଅଭୁଅ, ସଫା ଓ ଅଳ୍ପ ଚଟଯୁକ୍ତ ହୁଏ । ତେଣୁ ଖାଇବାକୁ ଭଲଲାଗେ । ଏହି ସବୁ ଯୋଗୁ ନଇନିତାଲ ଆଳୁ ସର୍ବୋତ୍କୃଷ୍ଟ । ସିଲଙ୍ଗ୍ ଆଳୁ ତା'ର ଦ୍ୱିତୀୟ ।

ଆଳୁପାଇଁ ମାଟି ଦୋରସା, ବାଲିଆ ଓ ଉଚ୍ଚ ହେବା ଆବଶ୍ୟକ । ମାଟି ଅଠାଳିଆ ହେଲେ, ଆଳୁ ଭଲ ହୁଏନାହିଁ । ଦୋରସା ମାଟିରେ ସଢା ପତ୍ର ଇତ୍ୟାଦି ପଡ଼ି ଢ଼ିପ୍ସାସିଆ ଓ ବଳୁଆ ହୋଇଥିଲେ ଆଳୁ ପକ୍ଷରେ ବେଶୀ ଉପକାରୀ । ବାଲିଆ ମାଟିରେ ପଟୁ ପଡିଥିଲେ ବା ପଙ୍କ ପକାଇଲେ ଆଳୁପାଇଁ ଭଲ ହୁଏ । ସମ୍ପୂର୍ଣ୍ଣ ବାଲିଆ, ଗୋଡ଼ିଆ ବା ମଟାଳ ମାଟି ଆଳୁପକ୍ଷେ ଅନୁପଯୁକ୍ତ । ଖାଲୁଆ ଜମି ହେଲେ ପାଣୀ ଜମାରହି ଆଳୁର ଅନିଷ୍ଟ କରେ । ଆଳୁଜମି ଜଳାଶୟର ନିକଟବର୍ତ୍ତୀ

ହେବା ଆବଶ୍ୟକ; ନୋହିଲେ ଜଳସେଚନର ଅସୁବିଧା ହୁଏ ।

ଆଶ୍ୱିନ ଓ କାର୍ତ୍ତିକ ମାସ ଆଳୁ ଲଗାଇବାର ଉପଯୁକ୍ତ ସମୟ । କେତେକ ସ୍ଥାନରେ ବର୍ଷରେ ୨ ଥର ଆଳୁ ଲଗାଯାଏ । ଥରେ ବୈଶାଖ ବା ଜ୍ୟେଷ୍ଠରେ ଅନ୍ୟଥରେ ଆଶ୍ୱିନ ବା କାର୍ତ୍ତିକରେ । ବିଆଳୀ ଧାନ, ଝୋଟ ବା ମକା କାଟିଲାପରେ ସେହି ଜମିରେ ଆଳୁ ଲଗା ଯାଇପାରେ । ଆଶ୍ୱିନ ମାସରେ ଜମିକୁ ଗଭୀରକରି ଚଷି ମାଟିକୁ ବେଶ୍ ଗୁଣ୍ଡକରି ଚଉରସ କରାଯାଏ । ତତ୍‌ପରେ ଏକ ଏକ ହାତ ଛଡାରେ ଧାଡ଼ିଧାଡ଼ି କରି ସିଆର କରାଯାଏ । ଜଳ ମଡାଇବାପାଇଁ ପ୍ରତି ଚାରିହାତ ଛଡାରେ ଫୁଟେ ଚଉଡ଼ାରେ ସିଆର କାଟି ଅନ୍ୟ ଗୋଟିଏ ବଡ଼ ସିଆର ସହିତ ଯୋଗ କରାଯାଏ । ସିଆରହୁଡ଼ା ଉପରେ ଖଣ୍ଡେ ଛଡ଼ାରେ ପ୍ରାୟ ଖଣ୍ଡେ ଗଭୀରରେ ଦୁଇଧାଡିକରି ବିହନ ପୋତାଯାଏ । ଏହି ଉପାୟରେ ଲଗାଇଲେ ଫଳ ଅଧିକ ହୁଏ । ସୁବିଧା ଏହି ଯେ ଫସଲ ଅଗଭୁରା ମିଳେ ଏବଂ ଲଗାଇବା ପରେ ବର୍ଷାହେଲେ ପାଣୀ ଜମି ବିହନ ପଚଯାଇ ନଷ୍ଟହୋଇ ପାରେନାହିଁ । ଅନ୍ୟ ଉପାୟରେ ଲଗାଇଲେ ଜମିକୁ ଗଭୀରସକରି ଚାଷକରି ୪ । ୫ ଇଞ୍ଚ ଛଡ଼ାରେ ଗଭୀର କରି ଧାଡିଧାଡି କରି ସିଆର କଟାଯାଏ । ଏହି ସିଆର ମଧ୍ୟରେ ଚାଖଣ୍ଡେ ଛଡାରେ ବିହନ ପୋତି ଦୁଇପାଖର ମାଟିଦ୍ୱାରା ତାକୁ ଘୋଡାଇ ଦିଆଯାଏ ଏବଂ ଜମିକୁ ପୁଣି ଚଉରସ କରାଯାଏ । ପାଣୀ ମଡ଼ାଇବାପାଇଁ ୧୦।୧୫ ଫୁଟ ଅନ୍ତରରେ ମଟାଳ--ନାଳ କାଟିଲେ ଚଳେ । ପରେ ଗଛମୂଳକୁ ମାଟି ଦେଲେ ଗଛ ଦୁଇପାଖରେ ଅନେକ ନାଳ ହୋଇଯାଏ । ତିକିଏ ଅଧିକ ଗଭୀରକରି ଆଳୁ ପୋତିଲେ ତଳ ମାଟିରୁ ଶୀଘ୍ର ବତର ଶୁଖି ନଯିବା ଯୋଗୁଁ ଜଳ ମଡ଼ାଇବାର ଖରଚ ବହୁତ କମ୍ ପଡ଼େ ।

**ମଞ୍ଜି ଲଗାଇବା ପ୍ରଣାଳୀ:—**

ପାଟଣୀ ଆଳୁ — ଏକଇଞ୍ଚ ଗଭୀରରେ ଦୁଇଫୁଟ ଅନ୍ତର

ଲାଇନ୍‌ରେ ଗୃଖଣ୍ଡେ ଛଡ଼ା ପୋଛା ଦେବ ।

ସିଲଗ୍ ଅଳୁ:— ଦୁଇଟ ଲେଖାଏଁ ଆଖିଥାଇ କଟାଦେବ । ଠିକ୍ ପାଚଣୀ ଅଳୁପରି ଲଗାଦେବ । ଏହି କଟା ଦେବା ଯୋଗୁଁ ଏହାକୁ କାଟେଣୀ ଅଳୁ ମଧ କୁହାଯାଏ । ଏହାକୁ ପୋକ କାଟିବାରୁ ରକ୍ଷାକରିବା ପାଇଁ କାଟିବା ପରେ ଚୂନଗୁଣ୍ଡା କିମ୍ବା ପାଉଁଶରେ ବୁଡ଼ାଇ ରଖିବା ଉଚିତ ।

ମଞ୍ଜି ସାଇଛିବା:— ଅତି ବଡ଼ ନୁହେଁ ବା ଅତି ଛୋଟ ନୁହେଁ; ପୋକଖିଆ ବା ଦାଗ ନଥିବ; ଏପରି ଅଳୁ ବାଛିବାକୁ ଦେବ । ଘର ଭିତରେ ଖାଡ଼ିତଳେ ବାଲି ବିଛାଇ ରଖିବାକୁ ଦେବ । ୧୫ଦିନରେ ଥରେ ବାଛିଦେଇ ପୋଚଖିତକ ଫୋପାଡି ଦେଇ ଭଲକୁ ରଖିବାକୁ ଦେବ । ମହଣେ ରଖିଲେ ବର୍ଷଶେଷକୁ ୬୦ ସେରରୁ ବି କମ୍ ରହିପାରେ ।

ଭଲ ମଞ୍ଜି ଆଣି ଉଲ୍ଲିଖିତ ପ୍ରଣାଳୀରେ ଲଗାଇଲେ ବିହନ ଅଧିକ ଲାଗେ ସତ କିନ୍ତୁ ଆମଦାନି ବହୁତ ହୁଏ । ଯେଉଁ ଅଳୁ ହୁଏ, ତାହା ଛୋଟ ଛୋଟ ହୁଏ । ଅଧିକ ଛଡ଼ାରେ ଲଗାଇଲେ ବଡ଼ ବଡ଼ ଅଳୁ ଅଧିକ ଫଳେ । ଏହିପରି ଫସଲର ମଧଭଳି ଅଳୁଗୁଡ଼ିକ ବିହନ ପାଇଁ ରଖିବା ଉଚିତ । ଅଳୁର ଆକାର ଉପରେ ବିହନର ପରିମାଣ ନିର୍ଭର କରେ । ମାଣପ୍ରତି ସାଧାରଣତଃ ନଇନିତାଲ ଅଳୁ ୧୦।୧୬ ମହଣ ଓ ଦେଶୀଅଳୁ ଆଉ କିଛି କମ୍ ଲାଗେ । ସେଥିପାଇଁ ବିହନ ଖରିଦ କଲେ ଅଳୁ ଫସଲ ଲାଭଜନକ ହୁଏନାହିଁ ।

ଲଗାଇବାର ଦିନକ ଅନ୍ତରରେ ମାଟିଆରେ ପାଣୀ ସିଞ୍ଚିବାକୁ ଦେବ । ପ୍ରଥମେ ମଡ଼ା ପାଣୀ ଦେବା ଠିକ୍ ନୁହେଁ । ପ୍ରଥମେ ପ୍ରଥମେ ସନ୍ଧ୍ୟା ସମୟରେ ପାଣୀ ସିଞ୍ଚିବା ଭଲ । ସିଞ୍ଚିବା ଦ୍ୱାରା ମାଟି ବସି ନଯାଇ ଢାଲୁକା ରହେ । ମାଟି ବସିଗଲେ ଗଛ ହୋଇ

ପାରେନାହିଁ । ଲଗାଇବାର ପ୍ରାୟ ୧୫ଦିନ ପରେ ଅଳୁଗଛ ବାହାରେ । ଗଛ ୬ । ୭ଇଞ୍ଚ ଲେଖାଏଁ ହୋଇଗଲେ ଧାଡିରେ ଯେଉଁଠି ଗଛ ଉଠି ନଥିବ ସେଠାରେ ପୁଣି ମଞ୍ଜି ପୋତିବାକୁ ହେବ । ଗଛ ସବୁ ୪ । ୫ଇଞ୍ଚ ହୋଇ ଗଲେ ଖୁସାଇ ଦେଇ ଘାସ ବାଛିବ । ତା ପରେ ଧାଡିର ଦୁଇପାଖରୁ ମାଟି ବାହାର କରିଦେଇ ପିଡିଆ ବା ଆମୋନିଆ ସାଲ୍‌ଫେଟ୍ ଦେବାକୁ ହେବ । ତା ପରେ ସେହି ମାଟିକୁ ଅଣଓସାରିଆ କୋଡିରେ ଅଜାଡି ଦେଇ ହୁଡ଼ା ଟେକ ଦିଆଯିବ । ୭ । ୮ଦିନରେ ପାଗ ଦେଖି ସିଆରରେ ପାଣୀ ମଡ଼ାଇବ । ୩ । ୪ ଥର ପାଣି ଦିଆଯିବା ପରେ ପୁଣି ହୁଡ଼ା ଟେକା ହେବ । ଏହା ଦୋହରି ହୁଡ଼ା । ଗଛ ମଲ୍ଲଯାଏ ବିନା ଅପତ୍ତିରେ ପାଣି ଦିଆଯାଏ ।

ଗୋବର, ଖତ ଓ ପିଡିଆ ଅଳୁର ପ୍ରଧାନ ସାର । ଜମି ପ୍ରସ୍ତୁତ କରିବା ସମୟରେ ମାଣପ୍ରତି ୩୦ । ୪୦ଗାଡି ଗୋବରଖତ ଦେଇ ଅଳୁ ଲଗାଇବା ପୂର୍ବରୁ ମାଣପ୍ରତି ୬୦ମହଣ ପିଡିଆଗୁଣ୍ଡ ଦେବା ଉଚିତ । ମାଟି ପ୍ରସ୍ତୁତ କରିବା ବେଳେ କରଞ୍ଜ ବା ଜଡ଼ାପିଡିଆ କିଛି ଦେଲେ ଭଲ ଲାଗନ୍ତି ନାହିଁ । ବୈଶାଖ ଠାରୁ ଭାଦ୍ରମାସ ପର୍ଯ୍ୟନ୍ତ ଛଣପଟ ଲଗାଇ ଅଣିକ କାର୍ତ୍ତିକମାସରେ ଜମି ପ୍ରସ୍ତୁତ କରିବା ପୂର୍ବରୁ ଲଙ୍ଗଳ ପକାଇ ଗଛଗୁଡାକୁ ମାଟିରେ ମିଶାଇ ଦେଲେ ଏବଂ ତା'ପରେ ସେହି ଜମିରେ ଅଳୁ ଲଗାଇଲେ ଉତ୍କୃଷ୍ଟ ଅଳୁ ଜନ୍ମେ; କିମ୍ବା ମାଣ-ପ୍ରତି ୩୦ ମହଣ ଜଡ଼ାପିଡିଆ ଅଳୁଲଗାଇବା ପରେ ପ୍ରୟୋଗ କରାଯାଇପାରେ । ଖୁବ୍ ଉର୍ବର ଜମିରେ କିଂବା ଯଥେଷ୍ଟ ପରିମାଣରେ ଜମିରେ ସାର ଦେଇ ଅଳୁ ଲଗାଇବା ଉଚିତ । ସାର ଜାଣିବାକୁ ହେଲେ ଶେଷରେ ଲାଭଛଡ଼ା ନୋକସାନ ହୁଏନାହିଁ । ଲଗାଇବାର ପ୍ରାୟ ୩ମାସରେ ଅଳୁଗଛ ଶୁଖିବାକୁ ଆରମ୍ଭ କରେ । ମାଘମାସ ବେଳକୁ ଗଛ ସବୁ ଶୁଖିଯାଏ । ଗଛ ଭଲକରି ଶୁଖିଯିବା ପରେ ଅଳୁ ଉଠାଇବା

ଉଚିତ । କିନ୍ତୁ ଯେଉଁଠାରେ ପୁଷମାସ ବେଳକୁ ନୂଆ ଆଳୁ ବିକ୍ରି କରି ପାରିଲେ ଅଧିକ ଦାମ୍ ମିଳିପାରେ, ସେପରି ସ୍ଥଳେ ଗଛ ସତେଜ ଥାଉଁ-ଥାଉଁ ପ୍ରତ୍ୟେକ ଗଛର ମୂଳ ଖୋଳି ବଡ଼ବଡ଼ ଆଳୁଗୁଡ଼ାକ ବାହାର କରିନେଇ ବିକ୍ରି କରାଯାଇପାରେ । ପରେ ଗଛମୂଳକୁ ଭଲକରି ମାଟି ଦେଇ ହୁଡ଼ା ବାନ୍ଧି, ଆବଶ୍ୟକମତେ ଜଳସେଚନ କରିବାକୁ ହେବ । ଏହା ଉତ୍ତାରୁ ଗଛ ଶୁଖିଯିବା ପରେ ଅନ୍ତିମଥରରେ ଯଥାସମୟରେ ଆଳୁ ଖୋଳାଯାଏ । ପ୍ରଥମଥର ଆଳୁଗୁଡ଼ାକ ସାବଧାନ ହୋଇ ହାତରେ ଉଠାଇବାକୁ ହୁଏ ବୋଲି ଉଠାଇବାର ଖରଚ ଅଧିକ ପଡ଼େ । କିନ୍ତୁ ଏହି ଆଳୁ ଅଧିକ ଦରରେ ବିକ୍ରି ହେଲେ ଲାଭ ହୋଇ-ଥାଏ । ଦୁଇଥର ଉଠାଇଲେ ଫସଲ ମଧ୍ୟ କିଛି ଅଧିକ ମିଳେ । ମାଘ ଫଗୁଣମାସ ଆଳୁ ଖୋଳିବାର ସମୟ । ସାଧାରଣତଃ କୋଡ଼ିଦ୍ୱାରା ଆଳୁ ଖୋଳା ଯାଇଥାଏ । କିନ୍ତୁ ବାଉଁଶରେ ବିଦାକାଠି ପରି କରିଦେଇ ଖୋଳିଲେ ଆଳୁ କଟିଯିବାର ଭୟ ନଥାଏ । ମାଣପ୍ରତି ସାଧାରଣତଃ ୧୦୦--୧୫୦ମହଣ ଆଳୁ ଉତ୍ପନ୍ନ ହୁଏ । କେବେକେବେ ୨୦୦ ରୁ ୩୦୦ମହଣ ମଧ୍ୟ ହୋଇ ପାରେ । ଏହି ଚାଷରେ ମାଣପ୍ରତି ୧୦୦ରୁ ୧୫୦ ଟଙ୍କା ଖରଚ ହୁଏ । ଲାଭ ୧୦୦ ବା ୧୫୦ ଟଙ୍କାରୁ କମ୍ ନୁହେ ।

ବିହନ ପାଇଁ ସତେଜ ଓ ନିରୋଗ ଗଛରୁ ଆଳୁ ରଖିବା ଉଚିତ; ପକ୍‌ଆଳୁ ବିହନ ପକ୍ଷରେ ଉଚିତ । ତେଣୁ ଗଛ ଭଲକରି ନଶୁଖିବା ପର୍ଯ୍ୟନ୍ତ ଆଳୁ ଖୋଳିବା ଉଚିତ ନୁହେଁ । ପୁଷ୍ଟ ଓ ମଧ୍ୟଭଳି ଆଳୁ ବାଛି ବିହନ କରିବ । ଏହା ଧୁଆଯାଏନାହିଁ । କେବଳ ମାଟି ଛଡ଼ାଇ ପରିଷ୍କାର କରି ଖରାରେ ଶୁଖାଇବା ଉଚିତ । ବିହନଆଳୁ ପଡ଼ି-ଯାଏ । ଏ[illegible] ୧୦ । ୧୫ ଟଙ୍କା ଦରରେ ବିକ୍ରି ହୁଏ [illegible] ତେଣୁ ବିହନ କିଣି ଆଳୁ [illegible]ବା ସାଧାରଣ [illegible] ହୁଏ ।

ବନ୍ଦନ ରଖିବା ପାଇଁ ଗୃହ ଘର କରିବା ଉଚିତ । ତାହା ଶୀତଳ ଓ ଶୁଷ୍କ ରହିବା ଉଚିତ । ପବନ ଯାତାୟତର ସୁବିଧା ହେବା ପ୍ରୟୋଜନ । ଏହି ଘରେ ବାଲି ଉପରେ ଧାଡ଼ିଧାଡ଼ି କରି ଓ ଛଡ଼ାଛଡ଼ା କରି ଏକ ପରସ୍ତରେ ଅଳୁ ରଖିବ । ମଝିରେ ମଝିରେ ଅନ୍ତତଃ ୭ । ୮ ଦିନରେ ଥରେ ଅଳୁ ବାଛି ଦେଉଥିବ । ଡ଼ାଳମାନଙ୍କରେ ଝୁଲାଇ ରଖିଲେ ବିହନ ଅଳୁ ଭଲରେ ରହେ ।

ବିହନ ଅଳୁକୁ ଲଗାଇବା ପୂର୍ବରୁ ଦାଲରେ ଅଧେ ପର୍ଯ୍ୟନ୍ତ ପୋଡି ଦେଇ ଛଡାରେ ଘୋଡ଼ାଇ ଦେଲେ ୨ । ୩ଦିନ ପରେ ୩ । ୪ ଇଞ୍ଚ ହୋଇଗଲେ ଲଗାଇବ । ବଡ଼ ଅଳୁ ହେଲେ ପ୍ରତି ଅଳୁଖଣ୍ଡରେ ୨ଟା କରି ଗଜାଥାଇ ଲଗାଇବା ଉଚିତ । ଲଗାଇବା ପରେ ଦୁଇରୁ ଅଧିକ ଗଜା ହେଲେ ୨ଟି ସତେଜ ଗଜା ରଖି ବାକି ଭାଙ୍ଗିଦେବ । କଟା ଅଳୁକୁ ଲଗାଇବା ପୂର୍ବରୁ ଭୁଷିଆ ପାଉଁଶ ବା ପିଡ଼ିଆ ପାଣିରେ ଭିଜାଇ ଦେଇଥିଲେ ଉଇ ଧରେ ନାହିଁ । କଟାଅଳୁ ଲଗାଇଲେ ବିହନ କମ୍ ଲାଗେ ଓ ଗଛ ସମାନ ପରିମାଣରେ ହୁଏ । ବନ୍ଧୁ ଗୋଟା ଅଳୁରେ ଫସଲ ବହୁତ ମିଳେ ।

ଅଳୁ ଚେରରୁ ଜନ୍ମେ ବୋଲି ଅନେକଙ୍କର ଧାରଣା । କିନ୍ତୁ ତାହା ଭୁଲ୍ । ପ୍ରକୃତରେ ମାଟିତଳେ ସରୁସରୁ ଡ଼ାଳରୁ ଅଳୁ ଜନ୍ମେ । ଏହା ଫଳ ନୁହେଁ , ଖାଦ୍ୟସଞ୍ଚିତ ଡ଼ାଳର ରୂପାନ୍ତର ମାତ୍ର । ଗୋଟିଏ ଅଳୁ ଗଛର ଗୋଟିଏ ମାତ୍ର ଡ଼ାଳକୁ ଅନ୍ଧାର କରି କେତୁଦିନ ଘୋଡାଇ ରଖିଲେ ( ଅନ୍ୟାନ୍ୟ ଡ଼ାଳପତ୍ର ଅଲୁଅ ପାଉଥିବ ) ଉପର ଡ଼ାଳରେ ଅଳୁ ହେବାର ଦେଖାଯାଏ ।

ଅଳୁଚାଷ ପାଇଁ ଅନେକ ସମୟରେ ଚାଷୀମାନେ ଉପଯୁକ୍ତ ବିହନ କିଣିବାକୁ ନପାଇ ହଇରାଣ ହୋଇଥାନ୍ତି । ମାତ୍ର ଇଚ୍ଛା କଲେ ସେମାନେ ସହଜରେ ପାଇ ପାରିବେ । କଟକ କୃଷିବିଭାଗ ଉତ୍ପନ୍ନ

ଡ଼ାଇରେକ୍ଟରଙ୍କ ନିକଟକୁ ସେପ୍ଟେମ୍ବର ମାସରେ ମଞ୍ଜିଅଳୁ ନିମିତ୍ତ ବାଲେଶ୍ବର ସହର ଟ୯୯-୫୯ କ୍ୱା ଦରରେ ଯେଉଁମାନେ ମଗାନ୍ତି ସେମାନେ ସହଜରେ ପାଇ ପାରିବେ । ସେଠାରେ ଭଲ ମଞ୍ଜି ମିଳିଥାଏ । ଆମର ଏଠାକାର ଲୋକେ କଟକ ଯାଇ କିଣି ଆଣି ପାରନ୍ତି ।

ଅଳୁ ଚାଷରେ ଚଷା ଗୋଟିଏ ଚାଲାକି କରିପାରେ । ଅଳୁରେ ଶେଷ ଥର ପାଇଁ ଯେତେବେଳେ ପାଣି ଦେବାର କଥା, ତା'ର ଟିକିଏ ଅଗରୁ ଅଳୁ ସିଆରରେ ଅଖୁ ଲଗାଇଦେଲେ ଅଖୁର ଚାଷ ଖରଚ ଅନେକ କମିଯାଏ । ଅଖୁ ଦୁଇହାତ ଅନ୍ତରରେ ଲାଗେ । ଅଳୁ ହାତେ ଅନ୍ତରରେ । ତେଣୁ ଗୋଟାଏ ଛାଡ଼ି ଗୋଟାଏ ସିଆରରେ ଟିକିଏ କୋଡ଼ ଦେଇ ଅଖୁପୋଡ଼ ପାଣି ମଡ଼ାଇ ଦେଲେ ଅଖୁ ଗଛ ହୋଇଯାଏ । ଅଳୁ ଖୋଳିଲା ବେଳକୁ ଅଖୁସିଆର ମାଟି ପାଏ । ଅଳୁକୁ ଦିଆ ହୋଇଥିବା ଖତ, ଅଖୁକୁ ମଧ୍ୟ କାମ ଦିଏ । ଅଳୁର ଚାଷ ଅଖୁକୁ କାମଦିଏ । ମୋଟରେ ମାଗଣା ମାଗଣା ଅଖୁ ଫସଲଟା ଉଠିଯାଏ ।

---

# ପଞ୍ଚମ ଅଧ୍ୟାୟ ।

## ଆମ୍ବ ।

ଆମ୍ବ ଗୋଟିଏ ଉତ୍କୃଷ୍ଟ ଓ ଅତି ସୁସ୍ୱାଦୁ ଫଳ । ଏହା ଆମ୍ଭ-ମାନଙ୍କ ଦେଶର ପ୍ରାୟ ସବୁ ଅଞ୍ଚଳରେ ଅଳ୍ପାଧିକ ପରିମାଣରେ ଜନ୍ମି-ଥାଏ । ଗୁଣଭେଦରେ ବିଭିନ୍ନ ଶ୍ରେଣୀର ଆମ୍ବ ଦେଖାଯାଏ । ନାନା ଜାତୀୟ ଆମ୍ବ ଥିଲେ ମଧ୍ୟ ତନ୍ମଧ୍ୟରୁ ଏହି କେତେକ ଜାତି ପ୍ରଧାନ; ଯଥା:— ବୋମ୍ବାଇ, ମାନ୍ଦ୍ରାଜ୍, ଫଜଲି, ମାଲଦ, ଲେଙ୍ଗଡ଼ା, ଗୋପାଳଭୋଗ, କଞ୍ଚାମିଠା । ଆମ୍ବ ସାଧାରଣତଃ ବାଲିଆ ମାଟିରେ ଭଲ ହୋଇ ଥାଏ । ମଞ୍ଜି ବା ଟାକୁଆରୁ ଯେଉଁ ଗଛ ଜନ୍ମେ ତାକୁ ବୀଜୁ ଗଛ କହନ୍ତି । କଲମିଦ୍ୱାରା ଯେଉଁ ଗଛ କରାଯାଏ ତାକୁ କଲମ ଗଛ କୁହାଯାଏ । ବୀଜୁ ଗଛରୁ ଯେଉଁ ଫଳ ହୁଏ ତାହା ମୂଳ ବା ଅସଲ ଫଳଠାରୁ ପ୍ରାୟ ନିକୃଷ୍ଟ ହୋଇଯାଏ । କିନ୍ତୁ କଲମି ଗଛରୁ ଯେଉଁ ଫଳ ହୁଏ, ତାହା ଅବିକଳ ମୂଳ ଫଳପରି ଉତ୍କୃଷ୍ଟ ହୋଇଯାଏ । ଏହି କାରଣରୁ ଯୋଡ଼କଲମ କରି ଆମ୍ବଗଛ ଲଗାଇବା ଅଧିକାଂଶ ସ୍ଥଳରେ ପ୍ରଚଳିତ । କଲମିଗଛ ବୀଜୁଗଛଠାରୁ ଶୀଘ୍ର ଫଳେ ଏବଂ ଆକାରରେ ବୀଜୁଗଛ ପରି ବଡ଼ ହୁଏନାହିଁ । ତେଣୁ ସମପରିମାଣ ଜମିରେ ଅଧିକ କଲମିଗଛ ଲଗାଇ ହୁଏ । କଲମିଗଛ କିପରି ତିଆରିଯାଏ ସେ ସମ୍ବନ୍ଧରେ ବିଶେଷଭାବେ ଲେଖାଯିବ ।

କଲମିଗଛ ୩ଫୁଟ ବା ହାତ୨୦ତି ଅନ୍ତରରେ ଲଗାଇବା ଉଚିତ । ଏଥିରେ ମାଣପ୍ରତି ପ୍ରାୟ ୪୮ଗୋଟା ଗଛ ଲଗାଯାଇପାରେ । କଲମି

ଗଛ ୩ । ୪ ବର୍ଷ ମଧ୍ୟରେ ଫଳେ । କଲମି ଆମ୍ବର ଡାଳୁଆରୁ ଗଛ ହେଲେ ତାହା ପ୍ରାୟ ୪ । ୬ବର୍ଷରେ ଫଳେ । ବୀଜୁଗଛ ଫୂ୪୫ଠ ବା ହା୫୦ତ ଛଡ଼ାରେ ଲଗାଇବା ଭଲ । ଏଥିରେ ମାଣପ୍ରତି ୨୧ଟା ଗଛ ଲଗାଯାଇପାରେ । ଆଷାଢ଼ମାସରେ ଡାଳି ପକାଇଲେ ଏକ ମାସ ପରେ ଗଛ ଲଗାଯାଏ । ବୀଜୁଗଛ ଅଠଦଶବର୍ଷରେ ଫଳେ ।

ଆମ୍ବଗଛ ଲଗାଇବା ପୂର୍ବରୁ କ୍ଷେତ୍ରରେ ହାତେ ଓସାର ଓ ଦୁଇହାତ ଗଭୀର ଗାତ କରି ତହିଁରେ ଖତ ଆଦି ଦେଇ ଗଛ ପୋତା ଯାଏ । ସେହି ଖୋଳା ଯାଇଥିବା ମାଟି ଦ୍ୱାରା ଗାତକୁ ଭର୍ତ୍ତିକରି ଦିଆଯାଏ । ଗଛ ବଡ଼ ହେବା ପର୍ଯ୍ୟନ୍ତ ତାହା ମୂଳରୁ ଘାସ ଇତ୍ୟାଦି ବାଛିଦେବା ଉଚିତ ।

---

# ପଣସ ।

ପଣସ ଦେଖିବାକୁ ଅସୁନ୍ଦର ହେଲେହେଁ ପଣସପରି ବୃହତ ଆକାରର ଫଳ ଆଉ ଦେଖାଯାଏନାହିଁ । ପାଚିଲା ଫଳ ଖାଇବାକୁ ଯେପରି ମିଠା ଓ ସୁସ୍ୱାଦୁ ସେହିପରି ପୁଷ୍ଟିକର । ମଞ୍ଜି ବାହାରିକରି ପଣସକୋଷାକୁ ଚିନିକା ଦୁଧ ସହିତ ଅଉଟି ଛାଣିନେଲେ ଥଣ୍ଡା ହେବାପରେ ରବଡିପରି ଏକପ୍ରକାର ଉପାଦେୟ ଖାଦ୍ୟ ପ୍ରସ୍ତୁତ ହୁଏ । ଅମ୍ବସଢ଼ାପରି ପଣସରସକୁ ଖରାରେ ଶୁଖାଇ ପଣସସଢ଼ା କରାଯାଇ-ପାରେ । ପଣସମଞ୍ଜି ଅତ୍ୟନ୍ତ ପୁଷ୍ଟିକର । ଏହାକୁ ପୋଡ଼ି, ଭାଜି, ତରକାରୀ କରି ଖିଆ ଯାଇଥାଏ । ମଞ୍ଜିକୁ ପାଉଁଶରେ ଗୋଳାଇ ଭଲ କରି ଶୁଖାଇଲେ ଅନେକ ଦିନ ରଖାଯାଇପାରେ ।

ପଣସ ସାଧାରଣତଃ ଦୁଇ ଜାତିର ଦେଖାଯାଏ । ୧--ଖଜାପନ୍ସ ଅନ୍ୟଜାତି ପଣସର ପନ୍ସ ଅପେକ୍ଷା କିଞ୍ଚିତ ଗୋଲାକାର । ଫଳ ବଡ଼; ଉପର ସେତେ କଣ୍ଟାଳିଆ ନୁହେଁ; ଏବଂ ପାଚିଲେ ମଧ୍ୟ ଉପର ରଙ୍ଗ ସବୁଜ । କୋଷା ଟାଣ ଓ ବଡ଼ । ରସ ଅଧିକ ଓ ବହଳିଆ ଆଉ ମଞ୍ଜି ଛୋଟ ।

୨ - **ସାଧାରଣ ଜାତି** :— ଖଜାଠାରୁ ଛୋଟ; ଉପର ଅଧିକ କଣ୍ଟାଳିଆ; କୋଷା ନରମ ଓ ଛୋଟ; ରସ ଅଳ୍ପ ପତଳା; ମଞ୍ଜି ବଡ଼ ।

**କେତେକ କଥା—**

୧- ପଣସ ପାଇଁ ଦୋରସା ଉଚ୍ଚଜମି ଆବଶ୍ୟକ । ପାଣି ଜମାହୋଇ ରହିବା ଭୂଇଁରେ ଏହା ଭଲ ହୁଏ ନାହିଁ ।

ପଣସ ମଞ୍ଜିର ଉତ୍ପାଦିକା ଶକ୍ତି ବେଶୀ ସମୟ ରହେନାହିଁ । ଏଣୁ ମଞ୍ଜି ବାହାର କରିବାର ଅଳ୍ପଦିନ ପରେ ପୋତିବାର ଚେଷ୍ଟା କରିବା ଉଚିତ । ପୋତିବା ପରେ ପଣସବୋଡିକୁ ମାଟିରେ ପୋତିଦେଲେ ଭଲ ଯାର ହୁଏ ।

୪ ବର୍ଷରୁ କମ୍‌ରେ ଗଛରେ ଫଳ ହେଲେ ତାହା ରଖିବା ଉଚିତ ନୁହେଁ ।

ଆଶ୍ୱିନ, କାର୍ତ୍ତିକ ମାସରେ ପଣସବଗିଚାରେ ହଳକରି ତା ମୂଳରେ ସାର ଦେବା ଉଚିତ । ମୂଳରୁ ଘାସଇତ୍ୟାଦି ସଫାକରି ଗଛର ପାଖେ ମାଟି ହୁଡ଼ା ଦେବାକୁ ହେବ । ପଚା ନଡ଼ା, ପିଡିଆ, ଘୋଡା-ଶାଳର ଆବର୍ଜନା ଏ ସବୁ ପଣସବଗିଚାର ପ୍ରଧାନ ସାର । ଗଛ ଛୋଟ ଥିଲେ ସାର ଦେବା ଠିକ୍ ନୁହେଁ । ଏହା କଲେ ପଣସ ଫାଟିଯାଏ । କୌଣସି ଗଛର ପଣସ ଫାଟି ଯାଉଥିବାର ଦେଖିଲେ ତା'ର କେତେକ ଚେର କାଟି ଗଛକୁ ଦୁର୍ବଳ କରି ଦିଆଗଲେ ଆଉ ଫାଟିବ ନାହିଁ । ଅସ୍ତ୍ରାଘାତଦ୍ୱାରା ଗଛରୁ ଗୁଡ଼ାଏ ଖୀର ମଧ୍ୟ ବୁହାଇଦେଲେ ହୁଏ ।

ମାର୍ଗଶୀର ଠାରୁ ଫାଲ୍‌ଗୁନ ମାସମଧ୍ୟରେ ପଣସର ଫୁଲ ହୁଏ । ପଣସ ଗଛର ଫୁଲ ହୁଏ ନାହିଁ । କେବେ କେବେ ପଣସ ଗଛରେ ପୋକ ଲାଗିଲେ ଗଛର ଗଣ୍ଡିରୁ ଲାଲ ରସ ବାହାରେ । ଏହା ଅନିଷ୍ଟ-କର । ସେଠାରେ ଗରମ ପାଣିରେ ପିଚକାରୀ ଦେଲେ ପୋକସବୁ ମରିଯାନ୍ତି ।

ଉଚ୍ଚ ଓ ଉର୍ବରା ଦୋରସା ମାଟିରେ ପଣସଗଛ ଭଲ ହୁଏ । ମଞ୍ଜିରୁ ଗଛ ଲଗାଇଲେ ଛଅ ସାତ ବର୍ଷରେ ଫଳେ କିନ୍ତୁ କଲମି ଗଛ ତିନି ଚାରି ବର୍ଷରେ ଫଳେ । ବର୍ଷା ସମୟରେ ମଞ୍ଜିକୁ ତଳିପକାଇ ଏକ ବର୍ଷ ପରେ ଲଗାଯାଏ । କୋଡିଏ ପଚିଶ ହାତ ଛଡାରେ ଦେଢ ହାତ ବା ଦୁଇ ହାତ ଗାତକରି ତହିଁରେ ସଢ଼ା ଖତ, ଗୋବରଖତ ବା

ପଙ୍କମାଟି ଭରଣ୍ଡକର ଗୃହ୍ମ ଗଛ ଲଗାଯାଏ । ଗଛ ବଡ ହେବା ପର୍ଯ୍ୟନ୍ତ ଅନ୍ୟାନ୍ୟ ଋତୁରେ ତାହା ମୂଳରେ ଜଳ ଦେବା ଆବଶ୍ୟକ ।

ଯେଉଁ ପଣସଗଛର ଫଳ ହେଉ ନଥାଏ ତାହାର ମୂଳକୁ ( ଯେଉଁ ସମୟରେ ଫଳ ଜାତ ହୁଏ ତାହାର ଏକ ମାସ ବା ଦୁଇ ମାସ ପୂର୍ବରୁ ) ଖୋଲାଇ ଦେଇ ଗୋବରଖତ ଭରଣ୍ଡକର ମାଟିରେ ପୋତି ଦେଇ ଫଳହେବା ପର୍ଯ୍ୟନ୍ତ ଯଥେଷ୍ଟ ଜଳ ଦେଲେ ଏବଂ ଡାଳମାନ ଭଲକର ଛେଦଦେଲେ ସେ ଗଛରେ ଫଳ ଉତ୍ପନ୍ନ ହୁଏ ।

---

# କଦଳୀ ।

ଏ ସମ୍ବନ୍ଧେ ଆମ ଦେଶରେ ଲୋକମାନେ ଅଳ୍ପ ବହୁତ ଜାଣି ଥିବାରୁ ସେ ସମ୍ବନ୍ଧରେ ବେଶୀ ଲେଖିବା ଅନାବଶ୍ୟକ ।

## କେତେକ କଥା

**ସ୍ଥାନ**—ଯେଉଁଠି ବର୍ଷାପାଣି ଜମାହୋଇ ରହେ ସେପରି ସ୍ଥାନ ଛଡା ଅନ୍ୟ ସବୁ ଜମିରେ କଦଳୀ ହୁଏ । ନୀରସ ଜମିରେ କଦଳୀ ଗଛ ଲଗାଇଲେ ମାଟି ସରସ ହୁଏ । ନୂଆ ଓ ଗଭୀର ମାଟିରେ କଦଳୀ ପୁଷ୍ଟ ହୁଏ । କାନ୍ଧି ବଡ ପଡେ ।

ଜମିକୁ ଭଲକରି ଚଷକରି ଆଠହାତ ଅନ୍ତର ଏକ ହାତ ଲେଖାଏଁ ଗାତକରି କଦଳୀପୁଆ ଲଗା ହୁଏ ।

**ସମୟ**—ଜ୍ୟେଷ୍ଠ କଦଳୀ—ମାତ୍ର ବିଶେଷ ପରୀକ୍ଷାଦ୍ୱାରା ଦେଖା ଯାଇଅଛି ଯେ ବର୍ଷାକାଳରେ କଦଳୀ ଲଗାଇଲେ ଗଛ ଖୁବ୍ ଫୁଲ କିନ୍ତୁ ଫଳପୁଷ୍ଟ ହୁଏ ନାହିଁ କିମ୍ବା କାନ୍ଧି ବଡ ହୁଏନାହିଁ । କାର୍ତ୍ତିକ ମାସରେ କିମ୍ବା ଫାଲ୍ଗୁନ ମାସରେ କଦଳୀ ଗଛ ଲଗାଇଲେ ଭଲ । ଖୁବ୍ ଖରା ଖାଇ ଗଛ ଖୁବ୍ ଶୁଖିଯାଏ ସତ କିନ୍ତୁ ଜ୍ୟେଷ୍ଠ ମାସରେ ବର୍ଷା ପାଇଲେ କ୍ରମେ ମୂଳରୁ ତିନି ଚାରିଗୋଟି ପୁଆ ବାହାରେ । ଏ ପୁଆ ବଢିଗଲେ ପ୍ରଥମେ ଗଛଟିକୁ ମୂଳରୁ ପୋଛି କାଟି ଦେଲେ ଅନ୍ୟ ଗଛ ଖୁବ୍ ଭଲ ହୁଏ । କାର୍ତ୍ତିକଠାରୁ ଜ୍ୟେଷ୍ଠ ଯାଏ ଗଛମୂଳକୁ ମଧ୍ୟେମଧ୍ୟେ କୋଡ଼, ମାଟି ଉଚ୍ଚ କରିଦେବା ବିଧେୟ ।

## ସାବଧାନତା—

୧—ପ୍ରତ୍ୟେକ ମାଡ଼ିରେ ତିନୋଟି ଗଛରୁ ବେଶୀ ଗଛ ରହିବ ନାହିଁ । ଅନ୍ୟ ଗଛକୁ ଉପାଡ଼ି ଦିଆଯିବ ।

୨—ଗୋଟିଏ ଗଛ କଟାହେଲେ ଅନ୍ୟ ଗୋଟିଏ ପୁଅକୁ ମିଶାଇ ତିନି ଗୋଟି ଗଛ ରଖିବାକୁ ହେବ ।

୩—ପତ୍ର ଅଦୌ କାଟିବାକୁ ହେବ ନାହିଁ ।

୪—କଦଳୀ କାନ୍ଧରେ ଶେଷ ଅଡ଼ିକୁ ଖୁବ୍ ଛୋଟ ଛୋଟ କଦଳୀ ଦେଖାଗଲେ ଭଣ୍ଡାକୁ ଭାଙ୍ଗିଦେବାକୁ ହେବ ।

୫—ବେଳେ ବେଳେ ଗଛମୂଳରେ ପୋକ ଲାଗିଲେ କଦଳୀ ପୁଷ୍ଟ ହୁଏ ନାହିଁ ; ଏବଂ ତା ଉପରେ କଳାକଳା ଦାଗ ଦେଖାଯାଏ । ଏପରିସ୍ଥଳେ ମୂଳରୁ ମାଟିକୁ ଭଲରୂପେ କୋଡ଼ି ତହିଁରେ ନୂଆ ମାଟି ଦେଲେ ଭଲ ହୋଇପାରେ ବା ଏକାବେଳକେ ସେ ମାଡ଼ିକୁ ଉପାଡ଼ି ଦେଲେ ଭଲ ।

୬—ବର୍ଷାସମୟ ଭିନ୍ନ ଅନ୍ୟ ସମୟରେ କାନ୍ଧ ପଡ଼ିଲେ ଗଛ ମୂଳରେ ପାଣି ଦେବା ଆବଶ୍ୟକ ।

୭—ପୁଅ ପୋତିବାବେଳେ ବଡ଼ ହୋଇଥିଲେ ଉପର ଅଂଶ କାଟିଦେଇ ମୂଳକୁ ବାଲିମିଶା ଗୋବରପାଣିରେ ବୁଡ଼ାଇ ଗାତରେ ପୋତିଲେ ଗଛ ଭଲ ହୁଏ ।

---

# ଅମୃତଭଣ୍ଡା ବା ପଟେପ୍ୟା ।

ଅମୃତଭଣ୍ଡା ପରଦେଶୀୟ ଗଛ ହେଲେ ମଧ୍ୟ ଅମ୍ଭଦେଶରେ ବେଶ୍ ଘରେଇ ହୋଇ ଗଲାଣି । ଅମୃତଭଣ୍ଡା ସମାନରେ ଏତେ ଶୀଘ୍ର-ଶୀଘ୍ର ଖୁବ୍ ପ୍ରଚୁରପରିମାଣରେ ଏବଂ ସବୁ ସମୟରେ ଫଳୁଥିବାର ଅନ୍ୟ କଣ୍ଟ ଫଳ ଦେଖାଯାଏ ନାହିଁ । ଫଳ ଓ ପରିବା ହିସାବରେ ଅମୃତଭଣ୍ଡା ଏତେ ମୂଲ୍ୟବାନ ଯେ ଏହାର ସ୍ୱଚ୍ଛମତ ଚାଷ ହେବା ଆବଶ୍ୟକ ।

ସବୁପ୍ରକାର ମାଟିରେ ଅମୃତଭଣ୍ଡା ହୋଇପାରେ । କିନ୍ତୁ ଉପୁଆସିଆ ମାଟିରେ ଭଲ ହୁଏ । ଚଟିକା କୁଣ୍ଡରେ ସେ ମଞ୍ଜିକୁ ତଳ ପକାଇ ପ୍ରାୟ ଦୁଇ ମାସ ପରେ ଶ୍ରାବଣ ବା ଭାଦ୍ରବ ମାସରେ ଯଥା-ସ୍ଥାନରେ ଗୋଟିଏ ଗୋଟିଏ ପୁଅ ୬ । ୭ ହାତ ଛଡ଼ାରେ ଲଗାଯାଏ । ଅନ୍ୟ ସମୟରେ ଲଗାଇବାକୁ ହେଲେ ତଳ ୭ । ୮ ଅଙ୍ଗୁଳ ଉଚ୍ଚ ହେଲେ ଗୋଟିଏ ଗୋଟିଏ ଉଠାଇ ନେଇ ଅନ୍ୟ ସ୍ଥାନରେ ଅଧିକ ଛଡାଛଡା କରି ବା ଗୋଟିଏ ଗୋଟିଏ ପୁରୁଣା ହାଣ୍ଡିରେ ବସାଇ ଦିଆଯାଏ । ହାତେ ବା ଦୁଇ ହାତ ଉଚ୍ଚ ହେଲେ ଯଥାସ୍ଥାନରେ ୬।୭ ହାତ ଛଡ଼ାରେ ଗୋଟିଏ ଗାତ କରି ତହିଁରେ ଖତ ଓ କେତେକ ଖଣ୍ଡ ହାଡ ଦେଇ ଗୋଟିଏ ଗୋଟିଏ ଗଛ ଲଗାଯାଏ । ଘରେ ପଡ଼ିଥିବା ଖୋଲା ଜାଗାରେ ହୁଏ । ଗଛ ଲଗାହେବାର ଦଶମାସପରେ କିଂବା ୧ ବର୍ଷ ପରେ ଫଳ ହୁଏ । ଗଛ ଗୁଡ଼ିର ପାଞ୍ଚ ହାତ ଉଚ୍ଚ ହେଲେ ଅଗ ଗଜା ଭାଙ୍ଗିଦେବା ଉଚିତ । ତାହାହେଲେ ପାଖରୁ ଡାଳ ବାହାରେ ଏବଂ ଫଳ ଭଲ ଓ ବଡ ହୁଏ । ପଟେପ୍ୟା ପ୍ରାୟ ସବୁସମୟରେ ଫଳେ ।

କିନ୍ତୁ ପୌଷ ଓ ମାଘ ମାସରେ ଫଳ ବଡ଼ ଓ ଅଧିକ ହୁଏ । ଅତି ଅଧିକ ଫଳହେଲେ ଶ୍ରେଷ୍ଠଗୁଡ଼ିକ ଛାଣ୍ଡାଇ ଦେଲେ ଡାଳର ବାକୀ ଫଳ ବଡ଼ ଓ ପୁଷ୍ଟ ହୁଏ । ଗଛ ୫ ବର୍ଷର ହୋଇଗଲେ ତାକୁ କାଟି ଦେବା ଉଚିତ । କାରଣ ୫ ବର୍ଷ ପରେ ଫଳ କମ୍ ଓ ଶ୍ରେଷ୍ଠଶ୍ରେଷ୍ଠ ହୁଏ । ପପେୟାର ମାଈ ଓ ଅଣ୍ଡିରା ଗଛ ଦେଖାଯାଏ । ଅଣ୍ଡିରା ଗଛର ଫୁଲ ଲମ୍ବ ଲମ୍ବ ନାଡ଼ରେ ଝୁଲି ପଡ଼ିଥାଏ । ଏଥିରେ ଅନେକ ସମୟରେ ଦୁଇ ଲିଙ୍ଗର ଫୁଲ ଥାଏ । ଏଣୁ ଅଣ୍ଡିରା ଗଛରେ ବେଳେବେଳେ ଫଳ ହେବାର ମଧ୍ୟ ଦେଖାଯାଏ । ଏହିପରି ଫଳର ମଞ୍ଜିରୁ ଗଛ ଉଠାଇଲେ କ୍ରମେକ୍ରମେ ଅଣ୍ଡିରା ଗଛରୁ ଫଳ ହେବାର ମଧ୍ୟ ଦେଖାଯାଏ ।

ପାଚିଲା ଅମୃତଭଣ୍ଡା ଶୀତଳ ଓ ତୃପ୍ତିକର ଏବଂ ଉପାଦେୟ । କଞ୍ଚା ଫଳର ତରକାରୀ ଯେପରି ଭଲ ଲାଗେ ସେହିପରି ଉପକାରୀ । ପପେୟାକ୍ଷୀରରୁ ପେପେନ ନାମକ ଏକ ପ୍ରକାର ପଦାର୍ଥ ବାହାରେ । ଏହା ଔଷଧରେ ବ୍ୟବହୃତ ହୁଏ । ଏହି ପେପେନ ଯୋଗୁଁ ପପେୟା କ୍ଷୀର ଗୋଳାଇ ଦେଲେ ଖୁବ୍ ଟାଣୁଆ ମାଂସ ମଧ୍ୟ ନରମ ହୋଇଥାଏ; ଏବଂ ଦୁଧରେ ପକାଇ ଦେଲେ ଦହି ବସିଯାଏ । କ୍ଷୀର ବା ପେପେନ୍ ପପେୟାଗଛର ସବୁ ଅଂଶରେ ଅଳ୍ପବେଶୀ ପରିମାଣରେ ଥାଏ ।

ଗଛର କାଣ୍ଡରେ ଫଳ ହୁଏ । ଗୋଟିଏ ଗଛରେ ୧୦୦ ବା ୧୫୦ ଟି ଫଳ ହୋଇଥାଏ ।

ମଞ୍ଜି ପୋତିବାକୁ ହେଲେ ବୈଶାଖ ଜ୍ୟୈଷ୍ଠ ମାସରେ ଜମିକୁ ଗୁଣ୍ଡକରି ଆଷାଢ଼ ମାସର ଆରମ୍ଭରେ ୪।୫ ହାତ ଅନ୍ତରରେ ଗୋଟିଏ ଗୋଟିଏ ମନ୍ଦାକରି ୨।୩ ଗୋଟି ଲେଖାଏଁ ମଞ୍ଜି ପୋତାଯାଏ । ଗଛହେଲେ ଭଲ ଗଛକୁ ରଖି ଅବଶିଷ୍ଟ ଗଛକୁ ବାହାର କରାଯାଏ ।

ଚାରା ଲଗାଇଲେ ୭।୮ ହାତ ଅନ୍ତରରେ ଲଗାଯାଏ । ଚାରା

୮ ଅଙ୍ଗୁଳ ହେଲେ ବୁଣିବାର ଉପଯୁକ୍ତ ହୋଇଯାଏ ।

ମାଈଗଛ ଭିତରେ ଅଣ୍ଡିରାଗଛ ନ ରହିଲେ ଫଳ ଭଲ ହୁଏ ନାହିଁ । ଗୋଟିଏ ଗଛରେ ଏକତ୍ର ମାଈ ଅଣ୍ଡିରାଫୁଲ ମଧ୍ୟ ହୋଇଥାଏ । ଅଣ୍ଡିରା ଫୁଲ ନଥିଲେ ମାଈ ଫୁଲରେ ଫଳ ଭଲ ହୁଏ ନାହିଁ । କିମ୍ବା ତହିଁରେ ମଞ୍ଜି ହୁଏ ନାହିଁ । ମାଣକରେ ଦୁଇ ତିନୋଟି ଅଣ୍ଡିରା ଗଛ ରହିବା ଉଚିତ ।

ବର୍ଷାକାଳରେ ଗଛମୂଳରେ ପାଣି ଜମି ନରହିବା ପାଇଁ ଢ଼ୁଡ଼ା ( ଢିପା ) କରିବା ଉଚିତ ।

ଅମୃତଭଣ୍ଡା ଗଛର ଆଖି ଓ ଦରପାଚିଲା ଶାଖାରୁ ମଧ୍ୟ ଗଛ ହୋଇପାରେ । ଏହା କରିବାକୁ ହେଲେ ଗଛରୁ କାଟି ଆଣି ଛାଇ ଜାଗାରେ ବାଲିଚର ମାଟିରେ ଗାତ କରି ପୋତି ଦିଆଯାଏ ଏବଂ ଗଛର ଗଳା ନ ହେବା ଯାଏ ଘୋଡାଇ ରଖିବାକୁ ହୋଇଥାଏ ।

---

# ଲେମ୍ବୁ ।

ଭିନ୍ନ ଭିନ୍ନ ଜାତୀୟ ନାନାପ୍ରକାର ଲେମ୍ବୁ ଅଛି । କାଗଜୀ, କାଗଜା, ଟଭା, ସରବତି ବା ମିଠା, ଜମ୍ବିଲ ବା ଜମ୍ବିର, ବାତାପି ବା କାନ୍ଦିଅ, କମଳା, ନାରଙ୍ଗି, କଣ୍ଟା ଇତ୍ୟାଦି ।

ଯେଉଁ ମାଟିରେ ଚୂନ ଭାଗ ଅଧିକ ଥାଏ ଅର୍ଥାତ୍ ଗେଙ୍ଗୁଟି ଥିବା ମାଟିରେ ଲେମ୍ବୁ ଭଲ ହୁଏ । ମାଟିରେ ଚୂନଭାଗ ଅଧିକ ନଥିବାର ଜଣାଗଲେ ଗଛମୂଳରେ ପୁରୁଣା ଚୂନ ଦେଲେ ଉପକାର ହୁଏ । ଗଛ ବଡ଼ ହୋଇ ମାଟି ଦୋଷରୁ ଫଳ ନ ହେଲେ, ଗଛମୂଳରେ ହାଡ଼ଗୁଣ୍ଡା ଓ ପାଉଁଶ କମ୍ପା ସେପରି ପିଡିଅ ଦେବା ଉଚିତ । ଏହି ଉପାୟରେ ଅନେକ ସ୍ଥଳରେ ଫଳ ହେବାର ଦେଖାଯାଏ । ଯେଉଁ ଜମିରେ ଲେମ୍ବୁ ଲଗାଯିବ ତାହା କିଞ୍ଚିତ ଉଚ୍ଚରା ଓ ଉଚ୍ଚ ହେବା ଉଚିତ୍ । ଯେପରିକି ପାଣି ଜମି ନରହେ ବା ବଢିପାଣି ପଶି ନପାରେ । ବର୍ଷାସମୟରେ ଲେମ୍ବୁଗଛ ଲଗାଯାଏ । ମଞ୍ଜି ଓ କଲମରୁ ଗଛ ହୁଏ । ପ୍ରଥମରୁ ଫଳଥିବା ଅଗ ଡାଳମାନଙ୍କରୁ ପୁଷ୍ଟ ଓ ସୁପକ୍ୱ ଫଳ ନେଇ ତାହାମଧ୍ୟସ୍ଥ ବଡ଼ ଓ ପୁଷ୍ଟ ଶୋଷାଗୁଡ଼ିକରୁ ଭଲ ମଞ୍ଜିଗୁଡ଼ିକ ରଖିବା ଉଚିତ । ମଞ୍ଜିଗଛ ୪।୫ବର୍ଷରେ ଫଳେ ଏବ କଲମିଗଛ ତିନବର୍ଷରେ ଫଳେ ।

କାଗଜୀ ଲେମ୍ବୁ ଗୋଲ, ଛୋଟ, ଚୋପା ପାତଳ ଏବ କାଗଜା ଠାରୁ ଅଧିକ ରସୁଆଳ, ସୁବାସଯୁକ୍ତ । କାଗଜାଲେମ୍ବୁ କାଗଜୀଠାରୁ କିଛିଏ ବଡ ଓ ଲମ୍ବା । କାଗଜୀଲେମ୍ବୁ ଔଷଧରୂପେ ବ୍ୟବହୃତ ହୁଏ, ଏହା ସେବନପାଚକ; ଏଥିରୁ ଆଚାର ମଧ୍ୟ ପ୍ରସ୍ତୁତ ହୁଏ ।

ମଞ୍ଜିଗଛଠାରୁ କଲମିଗଛରେ ଭଲ ଫଳହୁଏ । ମଞ୍ଜିରୁ ପ୍ରଥମ ଗଛ ଉଠିବାର ବର୍ଷା ସମୟରେ ହା ୧୦ ତ ଅନ୍ତରରେ ଗାତ

କରି ତହିଁରେ ଖତରା ମାଟି, ଗୋବରଖତ ଓ ପୁରୁଣା ଚୂନ ଦେଇ ଗୋଟିଏ ଗୋଟିଏ ଗଛ ଲଗାଯାଏ । ଫଳ ହେବା ସମୟରେ ଯଥେଷ୍ଟ ଜଳ ଦେବା ଆବଶ୍ୟକ । ଫଳକୁ ଯେତେଦିନଯାଏ ଗଛରେ ରଖାଯାଏ ସେତେ ଭଲ । ଆସାମଅଞ୍ଚଳରେ ଲେମ୍ବୁକୁ ଖୁବ୍ ବଡ଼ କରିବାର ଗୋଟିଏ କୌଶଳ ପ୍ରଚଳିତ ଅଛି । ଫଳ ଛୋଟ ଥିବା ସମୟରେ ଡାଳ ନୁଆଁଇ ଆଣି ମାଟିରେ ପୋତା ଯାଇଥିବା ଗୋଟିଏ ଛୋଟ କଳସୀ ମୁହଁରେ ପ୍ରବେଶ କରାଇ ଦିଆଯାଏ । ଫଳ ସ୍ୱାଭାବିକ ଭାବରେ ଯେତେ ବଡ଼ ହୁଅନ୍ତା, ଏହି ଉପାୟରେ ତା'ଠାରୁ ଢେର ବଡ ହୁଏ । କିନ୍ତୁ ଖୁବ୍ ଖଟା; ତାହା ଆଚାର ହୁଏ ।

ଅନେକ ସମୟରେ ଲେମ୍ବୁ ଫୁଲ ଝଡ଼ିପଡ଼ି ଫଳ ରହେ ନାହିଁ ଏହାର କାରଣ ମାଘ ମାସରେ ଗଛରେ ଫୁଲ ହେଲାବେଳେ ମୂଳରେ ରସର ଅଭାବ; ଏଥିପାଇଁ ପ୍ରତି ସପ୍ତାହରେ ଥରେ ଲେଖାଏଁ ଗଛ ମୂଳରେ ପାଣୀ ଦେବା ଆବଶ୍ୟକ । ବୈଶାଖମାସଠାରୁ ଲେମ୍ବୁ ବ୍ୟବହାର କରିବାର ଉପଯୁକ୍ତ ହୁଏ ।

ଲେମ୍ବୁଗଛର ମଞ୍ଜିରୁ କଲମ ହୁଏ । ଏହାର ଉପଯୁକ୍ତ ସମୟ ବର୍ଷାକାଳ । ସାଧାରଣ ଜମିରେ ଏହା ଜନ୍ମେ କିନ୍ତୁ ଦୋରସା ଓ ଚୂନଅଂଶିଆ ମାଟିରେ ଏହା ଭଲ ହୁଏ । ଲଗାଇବା ପୂର୍ବରୁ ଜମିରେ ସାର ଦେବା ଉଚିତ । ମାର୍ଗଶିର ଓ ପୌଷ ମାସରେ ଏହାର ମୂଳ ଖୋଳି ଦେଇ ବାହାରକୁ ଦିଶିଲା ଭଳି ୧୦।୧୫ ଦିନ ରଖିବା ପରେ ସାର ଦେଇ ମାଟି ଘୋଡ଼ାଇ ଦେବାକୁ ହେବ ।

ଅନ୍ୟ ଏକ ପ୍ରକାର କାଗଜୀ ଲେମ୍ବୁ ଫାଲ୍ଗୁନ ମାସରେ ନୂଆ ପତ୍ର ଓ ଫୁଲ ଧରିବାକୁ ଆରମ୍ଭ କରି କାର୍ତ୍ତିକ ମାର୍ଗଶିର ମାସରେ ଫଳ ପାଚିଥାଏ । ଖରାଦିନେ ପାଣୀ ଦେଲେ ଏହି କ୍ଷେତ୍ରରେ ବିଶେଷ ଉପକାର ହୁଏ ।

# ସପୁରୀ ।

ସପୁରୀ ଗୋଟିଏ ଅତି ଉତ୍କୃଷ୍ଟ ଫଳ; ଖଟା ମିଠା ଉଭୟ ଥାଏ । ଏହା ସ୍ୱାସ୍ଥ୍ୟପକ୍ଷରେ ହିତକର । ଏହାର ଗନ୍ଧ ମଧ୍ୟ ଅତ୍ୟନ୍ତ ଆମୋଦ-ଜନକ ।

ମଞ୍ଜି ବା କଲମରେ ଗଛ ହୁଏନାହିଁ । ଗଛର ମୂଳ ଫଳ ଉପରେ ଥିବା ଚୂଟୀ (ଗଛର ଅଂଶ); ଏହା ଏତେ ସହଜରେ ହୁଏ ଯେ ଏଥିପାଇଁ ବିଶେଷ ଲେଖିବା ଆବଶ୍ୟକ ନୁହେଁ । ବଜାରରେ ସପୁରୀ ଗୋଟିକ ଅତି କମ୍‌ରେ ୦/୨ ବା ୦/୪ ଲେ ବିକ୍ରି ହୁଏ । କିନ୍ତୁ ଲୋକେ ଏହାର ଆମଦାନିପ୍ରତି ବିଶେଷ ମନ ଦିଅନ୍ତି ନାହିଁ । ଏହାହିଁ ଆମ ଲୋକଙ୍କର ସ୍ୱଭାବ ।

ଗାଢ଼ ଖରଯୁକ୍ତ ସ୍ଥାନରେ ଏହାର ଅବାଦ ହୁଏ କିନ୍ତୁ ଏଠାକାର ଫଳ ତେତେ ସୁମିଷ୍ଟ ବା ସୁବାସଯୁକ୍ତ ହୁଏନାହିଁ ନୀରସ ଶୁଷ୍କ ଭୂମିରେ ମଧ୍ୟ ଏହା ରୋପଣ କରାଯାଇପାରେ ଏହା ଯେଉଁ ଠାରେ କରାଯାଏ ସେ ଜମି ଶୀଘ୍ର ଦୁର୍ବଳ ହୋଇଯାଏ । ଏଣୁ ସାର ଦେବା ଆବଶ୍ୟକ । ଆମ୍ବତୋଟାମାନଙ୍କରେ ଅନେକ ସପୁରୀଗଛ ଲଗାନ୍ତି । ବିଲରେ କଲେ ପ୍ରତିବର୍ଷ ସେଠାରେ ପଚାଖଡ଼, ହାଡ଼ଗୁଣ୍ଡ ଓ ପୁରୁଣା ଗୋବର ଇତ୍ୟାଦି ଦେବା ଉଚିତ ।

ବୈଶାଖଠାରୁ ଭାଦ୍ର ଆଶ୍ୱିନ ପର୍ଯ୍ୟନ୍ତ ଏହି ଗଛ ଲଗାଯାଇ ପାରେ । ଶ୍ରାବଣମାସରେ ବିଲରେ ଦୁଇହାତ ଅନ୍ତରରେ ଧାଡ଼ିଧାଡି କରି ଦେଢହାତ ଅନ୍ତରରେ ଗୋଟିଏ ଗୋଟିଏ ଗଛ ପୋତିଲେ ଚଳେ । କାର୍ତ୍ତିକ ମାର୍ଗଶିରମାସରେ କୋଡ ଦେବା ଆବଶ୍ୟକ ।

ମାଘମାସରେ ଏହି ଗଛରେ ଫଳ ଧରେ; ସେତେବେଳେ ମଧ୍ୟେମଧ୍ୟେ ପାଣି ଦେବାକୁ ହେବ । ବର୍ଷାଦିନରେ ମୂଳ ସଫାରଖି ପୁଅଗୁଡ଼ିକ ବାହାର କରନେଇ ଅନ୍ୟତ୍ର ପୋତିବାକୁ ହେବ । ନଚେତ୍ ବହୁତ ଗଛ ଏକାଠି ରହିଲେ ଭଲ ଫଳ ହେବ ନାହିଁ । ପୋତିବାପୂର୍ବରୁ ଏକହାତ ଗଭୀର ଓ ଓସାରିଆ ଗାତ ଖୋଳି ତହିଁରେ ମାଟି ଓ ପୁରୁଣା ଗୋବରଖତ ସମପରିମାଣରେ ଦେଇ ଗଛ ପୋତିବାକୁ ହେବ ।

ଫଳ ଉପରେ ଯେଉଁ ଗଛ ଥାଏ ତାହା ବେଶୀ ବଢ଼ିଲେ ଫଳ ବେଶୀ ବଡ଼ ହୁଏନାହିଁ । ଏହାର ସ୍ୱାଦୁ ମଧ୍ୟ ନଷ୍ଟ ହୁଏ । ଏହାକୁ କାଟି ଦେଲେ ମଧୁର ଗନ୍ଧ ନଷ୍ଟ ହୁଏ । ଏଣୁ ପତ୍ରକୁ ମକ୍‌ଚି ଦେଇ ତା ଉପରେ ଖଣ୍ଡେ ଇଟା ରଖିଦେଲେ ତାହା ଆଉ ବଢ଼େ ନାହିଁ । ଏଣୁ ଫଳ ବଡ଼ ଓ ଭଲ ହୁଏ । ଏହି ଫଳ ବିକ୍ରିହେଲେ କୃଷୀ ବିଶେଷ ଉପକୃତ ହୁଏ । ବିକ୍ରି ମଧ୍ୟ ଅଧିକ ସମ୍ଭବ ।

---

# ୭ଷ୍ଠ ଅଧ୍ୟାୟ ।

## ଚିନାବାଦାମ ।

ଏହା ଗୋଟିଏ ସମଧିକ ଲାଭଜନକ ଫସଲ । ଖାଦ୍ୟରୂପେ ଏହା ବିଶେଷ ପରିମାଣରେ ବ୍ୟବହୃତ ହୋଇଥାଏ । ଏହାର ତେଲ କାଳିର ଓ ସାବୁନ୍ କରିବାରେ ଲାଗିପାରେ । ଖାଇବାରେ ମଧ୍ୟ ଏହି ତେଲ କେହି କେହି ବ୍ୟବହାର କରିଥାନ୍ତି । ଏହାର ଗଛ ଓ ପିଡ଼ିଆ ଗାଈମାନଙ୍କର ଗୋଟିଏ ପୁଷ୍ଟିକର ଖାଦ୍ୟ । ଖାଇଲେ ସେମାନେ ବେଶୀ ଦୁଧ ଦିଅନ୍ତି । ଏହାର ପିଡ଼ିଆ ମଧ୍ୟ ଫସଲ ପକ୍ଷେ ବିଶେଷ ଉପକାରୀ । ବଜାରରେ ଭଜା ଚିନାବାଦାମର ବିକ୍ରି କମ୍ ନୁହେଁ । ଏଣୁ ଏହି ଫସଲ କରିବାପାଇଁ ଅମ୍ଭେମାନେ କୃଷକମାନଙ୍କୁ ଉପଦେଶ ଦେଇପାରୁଁ ।

ଏହାର କୃଷି ଅତି ସହଜ । ଥରେ ଫସଲ ଉଠିବା ପରେ ମଧ୍ୟ ମଞ୍ଜି ନବୁଣି ସେହି କ୍ଷେତରେ ଆଉଥରେ ଫସଲ ହୋଇଥାଏ । କିନ୍ତୁ ଏକ ସ୍ଥାନରେ ବରଂ ବାର ଫସଲ କଲେ ଭୂଇଁ ନିତାନ୍ତ ଦୁର୍ବଳ ହୋଇଯାଏ । ପ୍ରତି ଦୁଇବର୍ଷଅନ୍ତର ନୂଆ ଜମିରେ କରିବା ଭଲ କିମ୍ବା ଜମିରେ ପ୍ରଚୁର ସାର ଦେବା ଅବଶ୍ୟକ ।

**ଜମି**—ଯେଉଁ ଭୂଇଁରେ ଚୂନଅଂଶ ବେଶୀ ଓ ଯାହା ଓଦାବାଲିଯୁକ୍ତ ସେପରି ଜମି ବାଦାମ ପାଇଁ ଭଲ ।

**ସାର**—ଏଥିରେ ଗୋବରଇତ୍ୟାଦି ସାର ନଦେଇ ପୋଖରୀର ପଙ୍କୁଆ

ମାଟି, ନଦୀକୂଳ ଓ ପାଟଜମିର ପଟୁମାଟି ଦେଲେ ଭଲ। ଏଥିରୁ ମାଣପ୍ରତି ଦଶ ବାରଗାଡ଼ି ଦେଲେ ବିଶେଷ ଉପକାର କରେ। ଏକବର୍ଷ ଏହି ସାର ଦେଲେ ଆଉ ଦୁଇବର୍ଷ ଦେବା ଆବଶ୍ୟକ ହୁଏ ନାହିଁ।

**ଚାଷ**—ଫାଲ୍ଗୁନମାସଠାରୁ ଚାଷ କରି **ଜ୍ୟେଷ୍ଠ**ମାସ ମଧ୍ୟରେ ମାଟିକୁ ଠିକ୍ କରି ଏହି ମାସର ୧୫ ଦିନ ମଧ୍ୟରେ ମଞ୍ଜି ଲଗାଇବାକୁ ହେବ। ମାଟି ଅଲୁଜମିର ମାଟିପରି ଗୁଣ୍ଡହେବା ଆବଶ୍ୟକ। ଇଟା, ପଥର ଇତ୍ୟାଦି ଥିଲେ ବାହାର କରି ଦେବାକୁ ହେବ।

**ବୀଜ ବପନ** (ବୁଣା)—ଜମିରେ ଦେଢ଼ହାତ ଅନ୍ତର ସିଆରକରି ପ୍ରତି ସିଆରରେ ଦେଢ଼ହାତ ବା ଦୁଇହାତ ଅନ୍ତର ୪ଆଙ୍ଗୁଳି ମାଟିତଳରେ ଚିନାବାଦାମ ପୋତିବାକୁ ହେବ। ପ୍ରତ୍ୟେକ ଫଳଟିରେ ୩। ୪ ଟି ଲେଖାଏଁ ମଞ୍ଜି ଥାଏ। ଏହି ମଞ୍ଜିଟିମାନ ପୋତିଲେ ଗଛ ହୁଏ। କିନ୍ତୁ ଫଳଟିତମାମ ପୋତିଲେ ଝଙ୍କାଦେଇ ଗଛ ଭଲ ହୁଏ। ଆଉ ମଧ ମଞ୍ଜିକୁ ପୋକ ଖାଇ ଦେଇପାରେ। ଏହି ଫଳ ଲଗାଇବାକୁ ହେଲେ ମାଣପ୍ରତି ୧୦।୧୨ ସେର **ଆବଶ୍ୟକ** ହୁଏ।

ପୋତିବାର ଦଶ ବାରଦିନେ ଗଜା ବାହାରେ। ପୋତିବା ପରେ ଥରେ ମଇଦେଇ ମାଟିକୁ ଚାପି ଦେବା ଆବଶ୍ୟକ। ଜ୍ୟେଷ୍ଠର ଆଦ୍ୟରେ ମଞ୍ଜି ଲଗାଇଲେ ୧୫।୨୦ଦିନରେ ପ୍ରାୟ ସବୁ ଗଜା ହୋଇଯାଏ।

ଜମି ଚାଷ କଲାବେଳେ ଜଣେ ଚିନାବାଦାମର ଫଳ ଧରି ହଳ ପଛରେ ଦେଢହାତ ଛଡାରେ ଗୋଟିଏ ଗୋଟିଏ ପକାଇଦେଲେ ମଧ ଏତେ ପରିଶ୍ରମ କରିବାରୁ ରକ୍ଷା ମିଳେ; କମ୍ ବିହନ ମଧ ଲାଗେ। ଏଣିକି ଏହା ପାଇଁ ଅଉକିଛି କାମ କରିବାକୁ ପଡେନାହିଁ।

ମଧ୍ୟେମଧ୍ୟେ ଘାସଇତ୍ୟାଦି ବାଛି ଦେବାକୁ ହୁଏ । ଗଛର ଶାଖାପ୍ରଶାଖା ଛେଦିବା ସଙ୍ଗେସଙ୍ଗେ ଏହାର ପତ୍ରଗଣ୍ଡିରୁ ଚେର ବାହାରେ । ଏ ଗୁଡ଼ିକ ଚେର ନୁହେଁ । ଭବିଷ୍ୟତ ଫଳର ଆଧାର । ଏହାକୁ ଶୀଘ୍ର ମାଟିଦ୍ୱାରା ଘୋଡ଼ାଇଦେବା ଆବଶ୍ୟକ । ଏହାପର ଯେତେ ଯେ ଡାଳରେ ଏହା ଯେତେ ବଢ଼ିବ ଏବଂ ବଢ଼ିବା ସଙ୍ଗେସଙ୍ଗେ ମଧ୍ୟ ଘୋଡାଇବା ଉଚିତ । ଏଥିରେ ହେଳାକଲେ ଭଲ ଫଳ ହୁଏ ନାହିଁ ।

କାର୍ତ୍ତିକ ମାର୍ଗଶିରମାସରେ ଗଛରେ ଫୁଲ ଧରେ । କିନ୍ତୁ ଏ ଫୁଲରେ ଫଳ ନାହିଁ । ଫଳ ମାଟିତଳେ ହୁଏ । ଫାଲ୍ଗୁନମାସ ଫସଲ ସଂଗ୍ରହର ସମୟ । ଫସଲ ଗୋଟିଗୋଟିକରି ସଂଗ୍ରହକରିବା କଠିନ । କାରଣ ତଦ୍ୱାରା ଅନେକ ଫଳ ତଳେ ରହିଯାଏ ଏବଂ ର୍ଷା ହେଲେ । ସଙ୍ଗେସଙ୍ଗେ ଗଛ ଉଠେ । ସମଗ୍ର କ୍ଷେତ୍ରକୁ କୋଦାଳରେ କୋଡ଼ିଦେଇ ଫଳ ଗୋଟାଇ ନେଲେ ହୁଏ । ଚାଷ କରିଦେଲେ ମଧ୍ୟ ଇପରେ ।

ବର୍ଷାହେଲେ ଯଦି ଅନେକ ଗଛ ପୁନର୍ବାର ଦେଖାଯାଏ ତେବେ ଯେଉଁ ସ୍ଥାନରେ ଜାଗା ଖାଲିଥାଏ ସେଠାରେ ଅଳ୍ପ ଅଳ୍ପ ପୋତିଦେଲେ ୨ୟ ବର୍ଷ ପାଇଁ ହୋଇ ଯାଇପାରେ ।

ମାଣପ୍ରତି ଚିନାବାଦାମ ୬।୮ମହଣ ଫଳପାରେ । ମହଣ ୪୲୫ଙ୍କା ମ୍ୟ କେବେକେବେ ଅଧିକ ଦରରେ ବିକ୍ରିହେଲେ ଲାଭ ହୋଇଥାଏ କିନ୍ତୁ ଖର୍ଚ୍ଚ ମାଣପ୍ରତି ୫।୭ଙ୍କାରୁ ବେଶୀ ହୁଏ ନାହିଁ ।

---

# ଧନିଆ ।

ମସଲା ଓ ଗୁଣ୍ଡିପାଇଁ ଆମଦେଶରେ ଏହାର ବିଶେଷ ଆଦର । ଆମ୍ଭେମାନେ ଏହା କିଣିକରୁ କିଣୁଁ କିନ୍ତୁ ଅଳ୍ପ ବ୍ୟୟ ଓ ପରିଶ୍ରମରେ ଏହା ଆମ୍ଭେମାନେ ନିଜ ଜମିରେ କରିପାରନ୍ତି । ଏହାର ଚାଷରେ ସେପରି କିଛି ଗୋଲମାଲ ନାହିଁ ।

ସମତଳ ଓ ଅଳ୍ପ ଚିକଟାଭୂଇଁରେ ଧନିଆ ଭଲ ହୁଏ । ବର୍ଷାକାଳରେ ଜମିକୁ ଉତ୍ତମରୂପେ ଚାଷକରିବା ଆବଶ୍ୟକ । ଆଶ୍ୱିନ ମାସର ଆରମ୍ଭରେ ୩।୪ଥର ଭଲ ରକମ ଚାଷକରି ମାଣପ୍ରତି ୧୫।୨୦ସେର ଧନିଆ ବୁଣିବାକୁ ହୁଏ । ଶେଷଥର ଧନିଆ ବୁଣି ଚାଷ କଲାପରେ ମଇ ଦେଲେ ହେଲା । କାର୍ତ୍ତିକ ମାସର ପ୍ରଥମ ସପ୍ତାହପର୍ଯ୍ୟନ୍ତ ଧନିଆ ବୁଣାଯାଇପାରେ । କିନ୍ତୁ ଆଗରୁ ବୁଣିବା ଭଲ । ଏଥିରୁ ଗଛହେବାରେ ଟିକିଏ ଡେରି ହୁଏ; ତଥାପି ମାଟି ଭଲ ଚାଷ ହୋଇଥିଲେ ଓ ଭୂମି ଓଦାଥିଲେ ୮।୧୦ ଦିନ ମଧ୍ୟରେ ଗଜା ଆରମ୍ଭ ହୁଏ । ବୁଣିବାପରେ ଯଦି ଅକସ୍ମାତ୍ ବର୍ଷାହୋଇ ମାଟି ବସିଯାଏ ତେବେ ବିଦାଦ୍ୱାରା ମାଟିକୁ ଉଠାଇଦେବା ଆବଶ୍ୟକ ।

ଧନିଆର ଆଉ କୌଣସି କାମ ନାହିଁ । ମଧ୍ୟେମଧ୍ୟେ ଗଛ ଯଦି ବେଶୀ ଲଗାଲଗି ହୋଇଥାଏ ତେବେ କେତେକ ଗଛ ଉପାଡ଼ି ଦେବା ଉଚିତ । ଏ ସବୁଦ୍ୱାରା ଅତି ସୁନ୍ଦର ଚଟଣୀ ତିଆରି କରାଯାଏ । ଗନ୍ଧ ଓ ସ୍ୱାଦ ଅତି ଉପାଦେୟ ।

ଫାଲ୍‌ଗୁନମାସରେ ଗଛରେ ଫୁଲ ହୁଏ । ସେତେବେଳେ ଏହାର ସୁବାସରେ ଦିକ୍‌ବିଦିଗ ଆମୋଦିତ ହୋଇ ଉଠେ । ଚୈତ୍ରମାସରେ ଶସ୍ୟ ପକ୍ୱ ହୁଏ । ଏବଂ ଅମଦାନି କରାଯାଏ । ମାଣପ୍ରତି ୯ମହଣ ଠାରୁ ୧୪ । ୧୫ମହଣ ପର୍ଯ୍ୟନ୍ତ ଅମଦାନି ହୋଇଥାଏ ।

---

## ଜଡ଼ା ।

ଜଡା ଆମର ତେଲ ପାଇଁ ବେଶୀ ଲୋଡା ହୁଏ । ଆଜକାଲି ଆମ ଏ ଅଞ୍ଚଳରେ ଜଡାତେଲ ବାଲେଶ୍ୱରୀ ସେର ୫୦୧ ରେ ବିକ୍ରି ହେଉଅଛୁ । ପ୍ରାୟ ପ୍ରତ୍ୟେକ ପରିବାରରେ ଜଡାତେଲ ପିଲାମାନେ ଲଗାଇବାପାଇଁ ବ୍ୟବହୃତ ହୋଇଥାଏ । ଏଣୁ ଏହା ମଧ୍ୟ ଲାଭଜନକ । ଘଣାରେ କମ୍ବା ଯନ୍ତ୍ରଦ୍ୱାରା ଏଥିରୁ ତେଲ ବାହାର କରାଯାଏ ।

ଦୁଇ ପ୍ରକାର ଜଡା ଦେଖାଯାଏ । ବଡ ଜଡାଗଛ ପ୍ରାୟ ଆଠ ନଅ ହାତ ଉଚ୍ଚ ହୁଏ ଏବଂ ତିନ ଚାରିବର୍ଷ ରହିପାରେ । ଏହା ବାଡମାନଙ୍କରେ ହୁଏ । ଏହାର ଶାଖାପ୍ରଶାଖା ବର୍ଦ୍ଧିତ ହୋଇ ତହିଁରୁ ଅନେକ ଜଡା ଅମଦାନି ହୋଇପାରେ ।

ଛୋଟ ଜଡା ବର୍ଷକମଧ୍ୟରେ ୨ ଥର କରା ଯାଇପାରେ । ବୈଶାଖ ଏବଂ କାର୍ତ୍ତିକ ବା ମାର୍ଗଶିର । ପ୍ରଥମ ବର୍ଷର ଗଛରେ ୨ୟ ବର୍ଷ ମଧ୍ୟ ଫସଲ ହୋଇ ପାରନ୍ତା ମାତ୍ର ଆମ ଦେଶର ଖରାରେ ଗଛ ମରି ଯାଇ ୨ୟ ବର୍ଷ ଫଳ ଅଳ୍ପହୁଏ । ଏହି ଫସଲ ପ୍ରତି ବର୍ଷ କରାଯିବା ଉଚିତ ।

ଜ୍ୟେଷ୍ଠ ମାସ ଶେଷବେଳକୁ ଜମି ଠିକ୍ କରି ରଖି ଆଷାଢ ଆରମ୍ଭରେ ମଞ୍ଜି ବୁଣିବାକୁ ହୁଏ । ଦୁଇ ହାତ ଅନ୍ତର ଗୋଟିଏ ଗୋଟିଏ ଛୋଟ ଗାତ କରି ତହିଁରେ ପୋତି ତା'ପରେ ମଇ ଦେଲେ ମାଟି ସମାନ ହୁଏ । ମାଘ ଫାଲ୍ଗୁନ ମାସରେ ଏହି ଜଡାର ଅମଦାନି ହୁଏ । ଆମ ଏ ଅଞ୍ଚଳରେ ଏହି ଜଡା ଅନେକ ସ୍ଥାନରେ ହୋଇଥାଏ ।

ଅନ୍ୟ ଏକ ପ୍ରକାର ଜଡା ଅଛୁ । ତା'ର ମଞ୍ଜି ସେହିପରି

ଭୂମିରେ ଦୁଇ ଇଞ୍ଚ ମଧ୍ୟରେ ଦୁଇ ହାତ ଛଡ଼ାରେ ପୋତି ଦେଲେ ଏକ ସପ୍ତାହ ମଧ୍ୟରେ ଗଛ ହୁଏ । ଜମି ଚାଷ କରିବା ଅନାବଶ୍ୟକ । ବୈଶାଖ ଜ୍ୟେଷ୍ଠ ମାସ ବୀଜବପନର ସମୟ । ପୌଷମାସ ଆରମ୍ଭରୁ ଫଳ ପାଚିବାକୁ ଆରମ୍ଭ କରେ ।

ଆଉ ଏକ ପ୍ରକାର ଜଡ଼ା ଅଛି । ତାହା କାର୍ତ୍ତିକ ମାସରେ ଲଗାଇଲେ ଚୈତ୍ର ମାସରେ ଫଳ ଭାଙ୍ଗିବାର ଉପଯୋଗୀ ହୁଏ । ଏଥିପାଇଁ ଆଶ୍ୱିନ ମାସରେ ଜମିକୁ ଚାଷ କରି ଠିକ୍ କରିବା ଆବଶ୍ୟକ । ଭୋଦେଇ ଫସଲ ଅମଦାନି ପରେ ଏହି ଜଡ଼ାଫସଲ କରା ଯାଇପାରେ ।

ଜମି ଉର୍ବର ଥିଲେ ସାର ଦେବା ଅନାବଶ୍ୟକ । ନଚେତ୍ ଗୋବରସାର ଦେବା ଆବଶ୍ୟକ ହୁଏ । ମଧ୍ୟେମଧ୍ୟେ ପାଣି ଦେବା ଓ ମୂଳ କୋଡ଼ି ଦେଇ ଘାସ ଇତ୍ୟାଦି ସଫା କରିଦେବା ମଧ୍ୟ ଆବଶ୍ୟକ ହୋଇଥାଏ ।

ଅଳ୍ପବ୍ୟୟରେ ଏଥିରୁ କେତେକ ପରିମାଣରେ ଚଷାର ନିଜ ଖର୍ଚ୍ଚ ଯାଇ ଲାଭ ହୋଇପାରେ ।

---

# ପାଳୁଅ ।

ପାଳୁଅକୁ ଅରାଁରୁଟ କହନ୍ତି । ଏହା ଗୁଣ୍ଡହୋଇ ଡବାମାନଙ୍କରେ ବଜାରରେ ବିକ୍ରି ହୁଏ । ରୋଗିମାନଙ୍କପକ୍ଷରେ ଏହା ଗୋଟିଏ ଲଘୁପାକ, ମୁଖରୋଚକ, ଉପାଦେୟ ପୁଷ୍ଟିକର ଖାଦ୍ୟ ।

ସାଧାରଣତଃ ଖୀରି ଓ ପାୟସ କରି ମଧ୍ୟ ଏଥିରୁ ଉତ୍କୃଷ୍ଟ ଖାଦ୍ୟ କରାଯାଏ । ଏହାର ଚାଷରେ ବେଶୀ ପରିଶ୍ରମ ନାହିଁ । କିନ୍ତୁ ଏହା ଏକ ଲାଭଜନକ ଫସଲ । କଞ୍ଚା ପାଳୁଅ ତରକାରୀ କରି ମଧ୍ୟ ଖିଆଯାଏ ।

ନିର୍ଦ୍ଦିଷ୍ଟ ଜମିରେ ଘୋଡାଶାଳ ଓ ଗାଈଗୁହାଳର ଆବର୍ଜନା ମାଣପ୍ରତି ଅତି କମ୍ ୨୦।୨୫ ଗାଡ଼ି ଦେଇ ଫାଲ୍ଗୁନମାସ ଠାରୁ ଜ୍ୟେଷ୍ଠମାସ ପର୍ଯ୍ୟନ୍ତ ଚାଷ କରିବାକୁ ହୁଏ । ମାଟି ଗୁଣ୍ଡାହେବା ଆବଶ୍ୟକ । ଏହା ମୂଳ ଫସଲ । ଏଣୁ ଜମି ଗଭୀରଚାଷ ହେବା ଉଚିତ । ଆଷାଢ଼ ମାସର ପ୍ରଥମ ସପ୍ତାହରେ କିମ୍ବା ଜ୍ୟେଷ୍ଠମାସ ଶେଷଆଡକୁ ପାଳୁଅ ଲଗାଇବାକୁ ହେବ । ଏହାର ମଞ୍ଜି ନାହିଁ । ହଳଦୀ ଓ ଅଦାପରି ପାଳୁଅହିଁ ତା'ର ମଞ୍ଜି । ଏକ ହାତ ଅନ୍ତର ଧାଡ଼ି ମଧ୍ୟରେ ଏକ ହାତ ଅନ୍ତର ପାଳୁଅ ରୋପଣ କରିବାକୁ ହେବ; କିମ୍ବା ଆଖୁ ଲଗାଇବାପରି ହଳପଛରେ ଗାଡ଼ି ଗାଡ଼ି ଅନାଜ ଏକ ହାତ ଅନ୍ତର ପାଳୁଅ ଧକାଇବା ଆବଶ୍ୟକ ।

ତା'ପରେ ଗଛ ଉଠିଲେ ମଧ୍ୟେମଧ୍ୟେ କୋଡ ଦେବା ଛଡା ଆଉ କିଛି କାମ ନାହିଁ । ମୂଳ ଯେତେ କୋହାଳ ହେବ ପାଳୁଅ

ସେତେ ବଡ ହେବ । ପ୍ରଥମଥର କୋଡବେଲେ କିଛି ପିଡ଼ିଆ ବା ହାଡଗୁଣ୍ଡ ସାର ଦେଲେ ବିଶେଷ୍‌ ଉପକାର ହୁଏ । ବର୍ଷାକାଳରେ ଏଥିରେ ଜଳସେଚନ ଆବଶ୍ୟକ ହୁଏ ନାହିଁ ।

କୌଣସି କୌଣସି ସ୍ଥାନରେ ପାଳୁଅକୁ ପ୍ରଥମ ବର୍ଷ ଅବାଦ ନକରି ଛାଡିଦେଲେ ଖରାଦିନେ ଗଛ ମରି ଯାଇଥିଲେ ମଧ୍ୟ ମୂଳ ଥାଏ ଏବଂ ବର୍ଷାହେଲେ ପଲ୍ଲବିତ ହୋଇ ଉଠେ ଏବଂ କୋଡ ଇତ୍ୟାଦି ଦେଲେ ବହୁତ ପାଳୁଅ ଅମଦାନି ହୁଏ ।

ଯେ କୌଣସି ସ୍ଥାନରେ ପାଳୁଅ ଭଲ ହୁଏ । ପାହାଡତଳ ଭୂମିରେ ଚୃଷ ନକରି ସେହିପରି ପୋତିଦେଲେ ମଧ୍ୟ ପାଳୁଅ କେତେକ ପରିମାଣରେ ହୋଇଥାଏ । ଦୋରସା ଫମ୍ପା ମାଟି ଏହା ପକ୍ଷରେ ଭଲ । ନଈକୂଳ ଜମିରେ ଭଲ ପାଳୁଅ ହୁଏ ।

ମାର୍ଗଶିର ମାସଠାରୁ ପାଳୁଅ ବଢ଼ିବା ବନ୍ଦ ହୋଇ ଅସେ । ଗଛ ଶୁଖିବାକୁ ଆରମ୍ଭ କରେ । ଏହି ସମୟରେ ଉପାଡିବା ଉଚିତ । ଡେରିରେ ଉପାଡିଲେ ମୂଳରୁ ରସ କମ୍‌ ହୋଇ ଚେର ବେଶୀ ହୁଏ । ଆଗରୁ ଉପାଡ଼ିଲେ ରସ ବେଶୀ ଥାଏ କିନ୍ତୁ ସେତେ ପୁଷ୍ଟ ହୋଇ ନଥାଏ । ଏଣୁ ଠିକ୍‌ ସମୟରେ ଉପାଡିବା ବିଧେୟ ।

ଖୋଳିବାପରେ ମୂଳଗୁଡିକ ଧୋଇ ଦେଲେ ଖୁବ୍‌ ଧୋବ ଓ ସୁନ୍ଦର ଦେଖାଯାଏ । ଏହାକୁ କୁଟି ଜଳପୂର୍ଣ୍ଣ କୁଣ୍ଡ ବା ପାତ୍ରରେ ଉତ୍ତମରୂପେ ଚକଟି ଧୋଇ କିଛି ସମୟ ଛାଡ଼ିଦେଲେ ପାଳୁଅ ତଳେ ବସିଯାଏ । ଏହି ରସକୁ ଦୁଇ ତିନି ବାର ଧୋଇଲେ ଶେଷରେ ଖୁବ୍‌ ଧଳା ପଦାର୍ଥ ବାହାରେ । ଏହାକୁ ଖରାରେ ଶୁଖାଇଦେଲେ ପାଳୁଅ ପ୍ରସ୍ତୁତ ହୁଏ । କଷା ପାଳୁଅ ଅପେକ୍ଷା ମିଠା ପାଳୁଅ ଅଧିକ ସ୍ୱାଦଯୁକ୍ତ ଓ ସୁନ୍ଦର ଏବଂ ଅଧିକ ପାଳୁଅ ମିଳିପାରେ ।

---

## ଦୋକତା ବା ଧୂଆଁପତ୍ର ।

**ଜମି**—ଧୂଆଁ ଫସଲ ପାଇଁ ପଟୁଜମି କିମ୍ବା ଉର୍ବର ଦୋରସା ଜମି ଉପଯୋଗୀ । ସକଳ ପ୍ରକାର ଜମିରେ ଦୋକତା ହୋଇ ପାରେ କିନ୍ତୁ ଦୋରସା ଅପେକ୍ଷା ଅଳ୍ପ ବାଲିଆସିଆ ମାଟିରେ ଏହା ପ୍ରାୟ ଭଲ ହୁଏ । ବାଲି ବେଶୀ ହେଲେ ଦୋକତା ନିକୃଷ୍ଟ ଧରଣର ହୁଏ । ନିମ୍ନ ସମତଳ ଜମି ଉର୍ବର । ଏଣୁ ଏହା ଦୋକତାପାଇଁ ପ୍ରଶସ୍ତ । ଆଶ୍ୱିନ କାର୍ତ୍ତିକମାସରେ ଧୂଆଁପତ୍ର ଲଗାଯାଏ । ଭାଦ୍ର କିମ୍ବା ଆଶ୍ୱିନମାସ ମଧ୍ୟରେ ତଳି ପକାଇ ଗୃରା ପ୍ରସ୍ତୁତ କରିବା ଆବଶ୍ୟକ । ଯେଉଁ ସ୍ଥାନରେ ତଳି ପକାଇବାକୁ ହେବ ସେ ଜମି ଏପରି ଉଚ୍ଚ ଏବଂ ନିଗଡାଥିବ ଯେପରି କି ବର୍ଷାହେଲେ ମଧ୍ୟ ତହିଁରେ ଜଳ ଜମାହୋଇ ନରହି ନିଗିଡ଼ି ଯାଇ ପାରିବ । ମାଟିକୁ ପ୍ରାୟ ହାତେ ଗମ୍ଭୀରରେ ଖୋଳି ଉତ୍ତମରୂପେ ଢେଲା ଗୁଣ୍ଡକରି ସଢ଼ା ଅଳିଆ ଖତ କିମ୍ବା ଗୁହାଳର ସଢା ଝାଟିଆ ଖତ ପକାଇ ତାହା ଉପରକୁ ମାଟି ଦିଆଯାଏ । ତତ୍ପରେ ଧୂଆଁପତ୍ରର ମଞ୍ଜି ସମାନ ଭାବରେ ପାତଳକରି ବୁଣି ତାହା ଉପରେ ଖପରା ବା ଗୋଡି ନଥିବା ମାଟି ଉପ୍ୱାସିଆ କରି ବିଞ୍ଚିବାକୁ ହୁଏ । ଏହାପରେ ଝର୍ଝରି କଳସିରେ ଜଳ ସିଞ୍ଚା ହୁଏ । ଏହାଦ୍ୱାରା ମାଟି ଖୋଳି ହୋଇଯାଏନାହିଁ । କିମ୍ବା ମଞ୍ଜି ଏପାଖ ସେପାଖ ହୁଏ ନାହିଁ । ଏକ ଛଟାଙ୍କି ମଞ୍ଜି ତଳି ପକାଇଲେ ଏକ ମାଣ ଜମି ରୁଆ ଯାଇପାରେ । ତଳି ଗଛ ଛଅ ସାତ

ଅଙ୍ଗୁଳ ଉଚ୍ଚ ହେଲେ କମ୍ପା ଡହଁରେ ଗୁଡ଼ ପାଞ୍ଚଟି ଲେଖାଏଁ ପତ୍ର ବାହାରିଲେ ତାହାକୁ ଉପାଡ଼ି ଯେଉଁ ସ୍ଥାନରେ ରୋଇବା ଜମି ପ୍ରସ୍ତୁତ ହୋଇଥିବ ସେଠାରେ ଶୀଘ୍ର ରୋଇଦେବା ଉଚିତ । ଏପରି ଜମିକୁ ମାଘ ଓ ଫାଲ୍ଗୁନ ମାସରେ ଭଲ ରକମ ଚାଷକରି ଡହଁରେ ଚୂନ ବା ଖତ ମିଶାଇ ଦେବାକୁ ହେବ । ଆଶ୍ୱିନ ମାସର ଦଶ ବାର ଦିନ ମଧ୍ୟରେ ଯେତେ ଅଧିକ ଥର ସମ୍ଭବ ହୋଇପାରେ ଜମିକୁ ଚାଷକରି ମାଟି ଗୁଣ୍ଡ କରିବାକୁ ହେବ ।

ଲଗାଇବା ପୂର୍ବରୁ ଜମିକୁ ଗଭୀରରେ ଉତ୍ତମରୂପେ ଚାଷ କରି, ମାଟିକୁ ଉତ୍ତମରୂପେ ଗୁଣ୍ଡକରି, ସଢ଼ା ଗୋବରଖତ, ପାଉଁଶ ବା ଅଲଅା ଇତ୍ୟାଦିର ସଢ଼ାଖତ ପକାଇ ମଇଦେଇ ସମାନ ଓ ଚଉରସ କରାଯାଏ ।

**ରୋଇବା**—ପ୍ରାୟ ଛଅ ଫୁଟ ବା ଦେଢ଼ ହାତ ଛଡ଼ାରେ ଧାଡ଼ି ଧାଡ଼ି କରି ସେହି ଦେଢ଼ ହାତ ଅନ୍ତରରେ ଚାରା ରୁଆଯାଏ । ଖରା ତେଜ କମି ଯିବାପରେ ଅପରାହ୍ଣରେ ରୋଇଲେ ଗଛ ଝାଉଁଳି ପଡ଼େନାହିଁ । ରୋଇବାପରେ କେତେକ ଦିନ ପର୍ଯ୍ୟନ୍ତ ପତ୍ର ଇତ୍ୟାଦି ଦ୍ୱାରା ଗଛକୁ ଘୋଡ଼ାଇ ଦେବା ଭଲ । ରୁଆ ହେବାପରେ ଗଛ ମୂଳରେ ଏବଂ ଖାଲି ଜମିରେ ଜଳ ସିଞ୍ଚି ପ୍ରାୟ ପାଞ୍ଚ ଛଅ ଦିନ ପର୍ଯ୍ୟନ୍ତ ପ୍ରାୟ ପ୍ରତିଦିନ ଜଳ ଦେବାକୁ ହୁଏ । ତତ୍ପରେ ଅବସ୍ଥା ବୁଝି ପନ୍ଦର କୋଡ଼ିଏଦିନ ଅନ୍ତରରେ ଥରେ ଜଳ ମଡ଼ାଇଲେ ଚଳେ । ଗଛ ମୂଳରେ ଘାସ ବା ଅନ୍ୟାନ୍ୟ ବଣୁଆ ଗଛ ଥିଲେ ତାହାକୁ ଉପାଡ଼ି ଦେଇ ପରିଷ୍କାର କରିବା ଉଚିତ ।

**କଲମ କରିବା**—ଗଛ ବଢ଼ିଗଲେ ଫୁଲ ବାହାରିବାର କେତେକ ଦିନ ପୂର୍ବରୁ ପ୍ରତି ଗଛରେ ଆଠ ଦଶଟି ପତ୍ର ରଖି ତଳର ଆଉସବୁ ପତ୍ର ଛୁଣ୍ଡାଇ ଦେବା ଉଚିତ । ଗଛରୁ କୁଆଁ ବାହାରୁଥିଲେ ତାହା ମଧ୍ୟ ଭାଙ୍ଗି ପକାଇବା ଉଚିତ । ଭଙ୍ଗା ସ୍ଥାନରେ ମାଟି ଗୁଣ୍ଡ ସିଞ୍ଚିଦେଲେ ରସ ବାହାରିବା ବନ୍ଦ ହୋଇଯାଏ । ଏହାଦ୍ୱାରା ଗଛର ପତ୍ରଗୁଡ଼ିକ ଅଧିକ ରସ ପାଇ ଖୁବ୍ ପୁଷ୍ଟ ହୁଏ । ମଞ୍ଜି ଧରିବା ପାଇଁ ଯେଉଁ ଗଛ ଛାଡ଼ି ଦିଆଯାଏ ତହିଁରୁ କୁଆଁ ବା ପତ୍ର ଭାଙ୍ଗିବା ଉଚିତ ନୁହେଁ । ପତ୍ର ଛୁଣ୍ଡାଇଦେଲେ ତାହା ମୂଳରୁ ଯେଉଁ କୁଆଁ ବାହାରେ ଏହାକୁ ଭାଙ୍ଗିଦେବା ବିଷୟରେ ସାବଧାନ ହେବା ଆବଶ୍ୟକ । ପତ୍ର ପୋଖତ ହୋଇ ହଳଦିଆ ରଙ୍ଗ ପଡ଼ିଗଲେ ଏବଂ ହାତକୁ ମୋଟା ଏବଂ ଅଠା ଅଠା ଲାଗିଲେ କାଟିବାର ଉପଯୁକ୍ତ ହୁଏ ।

**ଆମଦାନି**—ସକାଳବେଳେ ଗଛରୁ କାକର ଛାଡ଼ିଗଲେ ଧୂଆଁ ପତ୍ର କାଟିବାର ଉତ୍କୃଷ୍ଟ ସମୟ । ପତ୍ର ଅତ୍ୟଧିକ ପୋଖତ ହେବା ପର୍ଯ୍ୟନ୍ତ ରଖି କାଟିବା ଆଦୌ ଉଚିତ ନୁହେଁ । ଯେଉଁ ଗଛର ପତ୍ର ପୋଖତ ହୋଇଥାଏ ସେହି ଗଛରୁ ପ୍ରଥମେ କାଟି କ୍ରମେ କ୍ରମେ ଅନ୍ୟାନ୍ୟ ଗଛ କଟାଯାଏ । ଅନେକ ସ୍ଥାନରେ ଗୋଟା ଗଛ ନକାଟି ପତ୍ର ଭଙ୍ଗାଯାଏ । କିନ୍ତୁ ଗୋଟା ଗଛକୁ ଖୁବ୍ ମୂଳରୁ କାଟିଦେବା ଭଲ । କାଟିବା ସମୟରେ ବର୍ଷାହେଲେ ଦୁଇ ତିନି ଦିନ ଛାଡ଼ି ଦେଇ ପୁଣି କାଟିବା ଉଚିତ । ମାଘଠାରୁ ଚୈତ୍ରମାସ ଧୂଆଁ ପତ୍ର କଟାଯିବାର ସମୟ । ଗଛ କଟାହେବା ପରେ କ୍ଷେତରେ ପକାଇ ରଖି ଦୁଇ ତିନି ଘଣ୍ଟା ଖରାରେ ଶୁଖିବାକୁ ଦିଆଯାଏ । ବେଶୀ ଖରା ନଥିଲେ ଦିନଯାକ ମଧ୍ୟ ଶୁଖାଇ ଦିଆଯାଇପାରେ । ମାତ୍ର ଦେଖିବାକୁ

ହେବ, ଯେପରି ଅଧିକ ଶୁଖି ପତ୍ର ମଡମଡ ହୋଇ ଭାଙ୍ଗି ନଯାଏ । ଏହାପରେ ଗଛକୁ ବଡ଼ା ବାନ୍ଧ ଘରକୁ ସେଣ୍ଡକୁ ନିଆଯାଏ । ତତ୍ପରେ ଅନେକ ଉପାୟରେ ଧୂଆଁ ପତ୍ର ତିଆରି କରାଯାଏ ।

**ଦୋକତା ତିଆରି**—ଘରକୁ ଆଣିବାପରେ ପତ୍ରସବୁ ଛୁଣ୍ଡାଇ ଡେଙ୍ଗଚର ମାଲମାଲ ଗୁନ୍ଥି ପବନ ଖେଲୁଥିବା ଏପରି ଖୋଲା ଘରେ ଦଉଡ଼ିରେ ଝୁଲାଇ ଦିଆଯାଏ । ଏଥି ନିମନ୍ତେ ଚାଷୀମାନେ ସାଧାରଣତଃ ଗୁହାଳ ଘର ବ୍ୟବହାର କରିଥାନ୍ତି । କିନ୍ତୁ ତଦ୍ଦ୍ୱାରା ଦୋକତାର ଗନ୍ଧ ଖରାପ ହୋଇଯାଏ । ପତ୍ରରୁ ଶିରା ଭଲରୂପେ ନଶୁଖିବା ପର୍ଯ୍ୟନ୍ତ ମାସେ ବା ଦୁଇମାସ ଏପରି ଝୁଲାଇ ରଖାଯାଏ । ଖୁବ୍ ଗରମ ଓ ଶୁଖିଲା ପବନ ବହିଲେ ଚାଟି ଇତ୍ୟାଦି ଦ୍ୱାରା ଘରକୁ ବନ୍ଦ କରିବା ଉଚିତ । ଅତ୍ୟଧିକ ଶୁଖିଲା ପାଗ ହେଲେ ଘରେ ପାଣୀ ସିଞ୍ଚି ଦିଆଯାଏ । ପତ୍ର ଭଲକରି ଶୁଖିଗଲେ ୧୫ । ୨୦ ଟା ପତ୍ରରେ ଗୋଟିଏ ଗୋଟିଏ ବଡ଼ା ବାନ୍ଧି ଥାକଥାକ ରଖି ହାତରେ ଚିପି ଦିଆଯାଏ । ପ୍ରାୟ ସାତ ଆଠ ଦିନ ଅନ୍ତରରେ ଏସବୁ ଥାକକୁ ଏକ ସ୍ଥାନରୁ ଅନ୍ୟ ସ୍ଥାନରେ ରଖିବାକୁ ହୁଏ । ଏବଂ ଉପର ବଡ଼ା ତଳକୁ ଏବଂ ତଳ ବଡ଼ା ଉପରକୁ ରଖି ଦିଆଯାଏ; ଏହିପରି କେତେକ ଦିନ ରଖିବାପରେ ଧୂଆଁ ପତ୍ର ତିଆରି ହୋଇ ବିକ୍ରୟ କରିବାର ଉପଯୁକ୍ତ ହୁଏ । କମ୍ପା ୧୫ ଦିନ ଶୁଖିଲାପରେ ଗୋଟିଏ ରାତି କାକରରେ ରଖାଯାଏ । ତହିଁ ପରଦିନ ସକାଳେ ହାତରେ ଚିପିଦେଇ ଗୋଟିଏ ଗାତ ଖୋଳି ତହିଁରେ ନଡ଼ା ଦେଇ ପତ୍ର ପୋତାଯାଏ । ପ୍ରାୟ ଦଶ ଦିନ ପରେ ବାହାର

କରି ଘରରେ ଶୁଖାଇ ଦିଆଯାଏ । ଏହାପରେ ପ୍ରାୟ ୫୦ ପତ୍ରରେ ଗୋଟିଏ ଗୋଟିଏ ବଡ଼ା ବନ୍ଧାଯାଏ । ଏହି ଉପାୟରେ ଧୂଆଁପତ୍ର ( ପ୍ରାୟ ମାସକ ଭିତରେ ) ତିଆରି ହୋଇପାରେ ।

ମକା ଏବଂ ନଳିତାପରେ ସେହି ଜମିରେ ଧୂଆଁପତ୍ର କରାଯାଇପାରେ, କିନ୍ତୁ ସାଧାରଣତଃ ଏକ ବର୍ଷରେ ଧୂଆଁପତ୍ର ଜମିରେ ଅନ୍ୟ କୌଣସି ଫସଲ କରାଯାଏ ନାହିଁ । ଯଥେଷ୍ଟ ସାର ପ୍ରୟୋଗ କଲେ ସେହି ଜମିରେ ଧୂଆଁପତ୍ରଫସଲ ୩ ବର୍ଷ ଲମ୍ବା ୪ ବର୍ଷ ପର୍ଯ୍ୟନ୍ତ କରାଯାଇପାରେ ।

ଏକମାଣ ଜମିରୁ ୬୦।୬୫ମହଣ ତିଆରି ଧୂଆଁପତ୍ର ମିଳେ । ଏହାର ଦାମ୍ ପ୍ରାୟ ୧୫୦ଟଙ୍କାରୁ କମ୍ ହେବ ନାହିଁ । କୃଷି ଇତ୍ୟାଦି ପାଇଁ ମାଣ ପ୍ରତି ଟ୫୦୧ ଙ୍କା ଖର୍ଚ୍ଚ ହେଲେ ମଧ୍ୟ ପ୍ରାୟ ଟ ୧୦୦ ଙ୍କାରୁ କମ୍ ଲାଭ ହୁଏନାହିଁ ।

ଧୂଆଁପତ୍ର ଓଡ଼ିଶାର ଅଧିକାଂଶ ଲୋକଙ୍କର ଗୋଟିଏ ଆବଶ୍ୟକ ପଦାର୍ଥ । ଗୁଣ୍ଡି, ବିଡ଼ି, ପିକା, ଗୁଡ଼ାଖୁ, ନାସ, ଚୂନପତ୍ର ଇତ୍ୟାଦି ନାନାରୂପରେ ଧୂଆଁପତ୍ର ସର୍ବଦା ପ୍ରତ୍ୟେକ ଗୃହସ୍ଥର ଗୃହରେ ଦେଖାଯାଇଥାଏ । ସ୍ତ୍ରୀ ପୁରୁଷ ସମସ୍ତଙ୍କର ଏହା ଆବଶ୍ୟକ । ଏଣୁ ଏହାର ଫସଲ ଲାଭଜନକ । ଏହି ଫସଲ ଅମଦାନି କଲେ କୃଷକ ନିଜର ବ୍ୟୟ ଛଡ଼ା ବଜାରରେ ବିକ୍ରି କରି ଲାଭ କରି ପାରେ । ମାତ୍ର ବିଶେଷ ସାବଧାନ ନହେଲେ ଏଥିରେ ପ୍ରକୃତ ଲାଭ ହୁଏ ନାହିଁ ।

---

# ଝୋଟ ଚାଷ ।

ଝୋଟ ଗୋଟିଏ ବେଶୀ ଲାଭଜନକ ଫସଲ । ବଙ୍ଗଦେଶର ଲୋକମାନଙ୍କର ଏହା ଗୋଟିଏ ଉତ୍କୃଷ୍ଟ ଚାଷ । ମାତ୍ର ଝୋଟର ବଜାର ଦର କମି ଯାଇଥିବାରୁ ଲୋକେ ଏହା ବେଶୀ କରୁନାହାନ୍ତି । ଆମ ଏ ଅଞ୍ଚଳରେ ପ୍ରାୟ ପ୍ରତ୍ୟେକ ଚଷା ନିଜର ଦଉଡ଼ି ଇତ୍ୟାଦି ଆବଶ୍ୟକତା ନେଇ କାଉଁରଅ କରିଥାନ୍ତି । ମାତ୍ର ଏହାର ଅଧିକ ଚାଷକଲେ ବଜାରରେ ବିକ୍ରି ହୋଇପାରେ ।

ଆମର ଡୋଲ୍ହ ବା ନାଲକୂଳିଆ ଜମିମାନଙ୍କରେ ଝୋଟ ଚାଷ କଲେ ବର୍ଷକରେ ଅନ୍ତତଃ ୨।୩ଟି ଫସଲ ଏକ ଜମିରୁ ଅଦାୟ କରିହେବ । ଜ୍ୟେଷ୍ଠ ମାସ ଶେଷ ସପ୍ତାହରେ ବା ଆଷାଢ଼ ଆରମ୍ଭରେ ଝୋଟ ମଞ୍ଜି ବୁଣିଲେ ଭାଦ୍ର ମାସରେ ଝୋଟ କଟା ଯାଇପାରେ । ଝୋଟ କଟାଯିବାପରେ ସେହି ଜମିରେ ଶାରଦ ଧାନ ରୋଇଲେ ଭଲହୁଏ । ଜମିର ଉର୍ବରତା ଦେଖି ଧାନ କଟାପରେ ମଧ୍ୟ ବିଲରେ ଝାଇଁ ମୁଗ ବୁଣିଲେ ଭଲ ଆମଦାନି ହୋଇପାରିବ । କୃଷିବିଭାଗ ଏପରି ଫସଲ କରି ଯେଉଁ ଫଳ ପାଇଛନ୍ତି ତା'ର ଗୋଟିଏ ତାଲିକା ତଳେ ଦିଆଗଲା ।

| ଏକମାଣ ଜମି | ଆମଦାନି | ହଟକ ଭାଉ |
| --- | --- | --- |
| ଝୋଟ | ମ ୧୫ | ଟ ୭୦୧ |
| ଧାନ | ମ. ୨୦ (ଭ ୨।୪) ଟ ୩୦୧ ତମ୍ବା | ଟ ୨୫୧ |
| ମୁଗ | ମ ୮ (ଭ ୧) | ଟ ୪୧ |

ଝୋଟଚାଷଦ୍ୱାରା ଧାନ ଫସଲରେ କୌଣସି ବାଧା ନପଡ଼ି

ବରଂ ଭଲହୁଏ । ଏଥିରେ କୌଣସି ଅଧିକ ଖର୍ଚ୍ଚ ପଡ଼େ ନାହିଁ କିନ୍ତୁ ଧାନକୁ ସାହାଯ୍ୟ କରି ଲାଭ ବଢ଼ାଏ ।

କେତେକ ସ୍ଥାନରେ ପାଣି ମଡ଼ାଇ ଚୈତ୍ର ମାସ ଶେଷ ଏବଂ ବୈଶାଖ ମାସ ଆରମ୍ଭରେ ଝୋଟ ବୁଣିଲେ ସବୁଠାରୁ ଭଲ ହୁଏ ଏବଂ ଧାନ ରୋଇବାର ସୁବିଧା ହୁଏ । ପାଣି ମଡ଼ାଇବାର ସୁବିଧା ନଥିଲେ ଜ୍ୟେଷ୍ଠ ଆଷାଢ଼ରେ ବୁଣିବା ଭଲ । ଯେଉଁ ଜାଗା ପାଟ, ସନ୍ତସନ୍ତିଆ ଓ ଯେଉଁଠାରେ ନାନାପ୍ରକାର ଘାସ ଦଳ ଇତ୍ୟାଦି ବଢ଼େ ସେଠାରେ ଝୋଟ ବୁଣିଲେ ଲାଭ ହୁଏ । ମେଲେରିଆ ରୋଗ ମଧ୍ୟ ହୁଏ ନାହିଁ । ମଶା ମରିଯାନ୍ତି ।

ଝୋଟ ଜମିରେ ମାଣପିଛା ଗୋବରଖତ ଚାରି ଗାଡ଼ି ଦେଲେ ଝୋଟ ଭଲ ହୁଏ । ତା ସଙ୍ଗେ ୨ ଧାନ ଓ ଅନ୍ୟାନ୍ୟ ଫସଲର ମଧ୍ୟ ଉପକାର ହୋଇଥାଏ । ଆହୁରି ଗୋଟିଏ 'ଜିପ୍‌ସମ୍' ବୋଲି ସାର ଅଛି । ତାହାର ଦାମ୍ ମହଣକୁ ଟ ୧୯ ବା ଟ୧୮ । ଏଥିରୁ ମାଣପ୍ରତି ଦେଢ଼ ମହଣ ଦେଲେ ଝୋଟର ଅମଦାନି ଭଲ ହୁଏ । ଆଉ ମଧ୍ୟ ତା'ର ରଙ୍ଗ ପରିଷ୍କାର ହୁଏ । ଝୋଟରୁ ନକଲି ରେସମ ପ୍ରସ୍ତୁତ ହୁଏ ବୋଲି ସଫା ଝୋଟର ଆଦର ବଜାରରେ ବେଶୀ ।

କାଉଁରିଆ ପରିବର୍ତ୍ତେ ନଳିତା ମଧ୍ୟ ବିଶେଷ ଉପକାରୀ । ମାଣପିଛା ବାଲେଶ୍ୱରୀ ୪ ସେର ହିସାବରେ ନଳିତା ମଞ୍ଜି ବୁଣିବାକୁ ହୁଏ । ଚୈତ୍ରମାସରେ ବୁଣିଲେ ଆଷାଢ଼ ଶ୍ରାବଣରେ କଟାଯାଇ ତା'ପରେ ଶାରଦଧାନ ରୋଇବାର ସୁବିଧା ହୁଏ । ଜମିରେ ନଳିତାପତ୍ର ସଢ଼ିଗଲେ ଧାନର ସାରପରି କାର୍ଯ୍ୟକରେ ।

ନଳିତା ବା ଝୋଟଚାଷର ପ୍ରଣାଳୀ ପ୍ରାୟ ସମସ୍ତେ ଜାଣ

ଅଧିକେ ଜାଣନ୍ତି । ମାତ୍ର ଆମଦାନ ଜାଣନ୍ତି ନାହିଁ । ଏଣୁ ଏହା କହିବା ଆବଶ୍ୟକ ।

ପ୍ରଥମେ ନଳିତାକୁ କାଟି ଦିନଟାଏ ଖରାରେ ଶୁଖାଇବ । ଏହାକଲେ ପତ୍ରଗୁଡ଼ିକ ଆପେଆପେ ଝଡ଼ି ପଡ଼ିବ । ଏହାପରେ ଅଗ କଟାଯିବ । ତା'ପରେ ଛୋଟଛୋଟ ବିଡ଼ା ବାନ୍ଧି ଏହି ବିଡ଼ାଗୁଡ଼ିକ ଏକାଠି କରି ଗୋଟିଏ ବଡ଼ ବିଡ଼ା କରିବାକୁ ହେବ । ପାଣିରେ ଦୁଇଟି ଖୁଣ୍ଟି ପୋତି ମଝିରେ ନଳିତା ରଖି ତା ଉପରେ ଦୁଇଟି ବାଉଁଶ ଦୁଇମୁଣ୍ଡରେ ବାନ୍ଧି ଦେବାକୁ ହେବ । ଏହା କଲେ ନଳିତା ଦବି ରହେ । ମଇଳା ପାଣିରେ ଅନେ ଝୋଟ ବୁଡ଼ାଇ ରଖନ୍ତି । କିନ୍ତୁ ଏହା ଅପେକ୍ଷା ସଫା ପାଣିରେ ଝୋଟ ଭଲହୁଏ । ସୁଅ ପାଣିରେ ଭଲ ହୁଏ ନାହିଁ । ଗଛ ପାକଲ ହୋଇହୋଇ ୧ ସପ୍ତାହରେ ନଚେତ୍ ୬ ସପ୍ତାହ ମଧ୍ୟରେ ଗଛ ପଚିଯାଇ ଧୋଇବାର ଉପଯୁକ୍ତ ହୁଏ । ତେଣୁ ବଡ଼ ବିଡ଼ାଟିକୁ ବାହାର କରି ତା'ର ପ୍ରତ୍ୟେକ ଛୋଟ ବିଡ଼ାକୁ ଗୋଟାଏ କାଠ ଚଟୁରେ ବାଡ଼େଇ ପାଣିରେ ହଲାଇ ଦେଲେ ତା'ର ଚୋପା ଓ ମଇଳା ଧୋଇ ହୋଇଯାଏ । ତା'ପରେ ତାକୁ ମଝିରୁ ଦୁଇ ଗଡ଼ କରି ଭାଙ୍ଗି ଖୁବ୍ ଜୋରରେ ପାଣିରେ ହଲାଇ ଦେଲେ କାଉଁରିଆ ଯାକ ଅଲଗା ହୋଇଯାଏ । ଆମେ ଯେପରି ଘରେ ଗୋଟିଗୋଟି କରି କାଉଁରିଆ ଛଡ଼ାଉ ସେଥିରେ ବେଶୀ ପରିଶ୍ରମ ପଡ଼େ ।

ଫୁଲ ଫୁଟିବା ସମୟରେ କାଟି ବାହାର କଲେ ନଳିତାରୁ ଭଲ ଝୋଟ ହୁଏ । ପାକଲ ହୋଇ ଝୋଟ ସେତେ ଭଲ

ହୁଏନାହିଁ ।

ଛେଳି ଓ ଗୋରୁଗାଈ ନଳକଡାର ବିଶେଷ ଅନିଷ୍ଟ କରନ୍ତି । ଆମ୍ଭେମାନେ ସେ ବିଷୟରେ ଆଦୌ ସାବଧାନ ହୋଇ ପାରୁ ନାହୁଁ । ବରଂ ଜଣେ ଫସଲ କଲେ ଅନ୍ୟ ଜଣେ ଗୋରୁ ଛାଡି ତା'ର ଘଣ୍ଟ କରୁଅଛୁ । ଏପରି କଲେ ଚଷା କାମ କରିକରି ଶେଷରେ ସର୍ବନାଶରେ ପଡେ ।

ଛୋଟ ମାଣପିଛା ୧୫ ମହଣରୁ ୨୫ ମହଣ ଅମଦାନି ହୋଇଥାଏ ।

---

Printed by A. Pattanaik at the Sankar Press, Dhenkanal.